ISSN: 2456-9194, Vol. III, Issue. III, Dec 2019

# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ଓଡିଶାର ଆଦିବାସୀ ଓ ମିତାନ ଗୋଷ୍ଠୀ: ସାମାଜିକ ସାଂସ୍କୃତିକ ପ୍ରତିନିଧି

**ସଞ୍ଜୟ କୁମାର ବାଗ**

ପୂର୍ବାଞ୍ଚଳ ଭାଷାକେନ୍ଦ୍ର

ଲକ୍ଷ୍ମୀସାଗର, ଭୁବନେଶ୍ୱର-୭୫୧୦୦୬

E-mail: sanjayakumarbag@gmail.com

*ସଂକ୍ଷିପ୍ତ ପରିଚୟ:- ଓଡିଶାରେ ୬୨ ପ୍ରକାରର ଆଦିବାସୀ ବସବାସ କରୁଛନ୍ତି । ସେ ମଧ୍ୟରୁ ସାନ୍ତାଳୀ, ମୁଣ୍ଡାରୀ, ଭୁଞ୍ଜିଆ, ବଣ୍ଡା, ହୋ, ଗାଦବା ଭଳି କେତେକ ଆଦିବାସୀ ଗୋଷ୍ଠୀର ସ୍ୱତନ୍ତ୍ର ଭାଷା ଅଛି । ସେହିପରି, ସମସ୍ତ ଆଦିବାସୀ ଗୋଷ୍ଠୀର ସ୍ୱତନ୍ତ୍ର ସଂସ୍କୃତି ଅଛି । ସଂସ୍କୃତି ପ୍ରତ୍ୟେକ ଗୋଷ୍ଠୀ ପାଇଁ ସେମାନଙ୍କ ପରିଚିତିର ସ୍ୱରୂପ । ସାଂସ୍କୃତିକ ଅଧ୍ୟୟନରୁ ଆମେ ସମ୍ପୃକ୍ତ ଗୋଷ୍ଠୀର ଜୀବନଧାରା, ରୀତିନୀତି, ବିଚାରବୋଧ, ବିଶ୍ୱଦୃଷ୍ଟି ସମ୍ପର୍କରେ ଅବଗତ ହୋଇଥାଉ । ଏହି ପ୍ରବନ୍ଧରେ ଆଦିବାସୀ ଓ ମିତାନ୍ ଗୋଷ୍ଠୀର ସାମାଜିକ ସାସ୍କୃତିକ ପ୍ରତିନିଧି ଓ ଅନୁଷ୍ଠାନ ବିଷୟରେ ସେମାନଙ୍କ ଶୃଙ୍ଖଳିତ କାର୍ଯ୍ୟଧାରା ଓ ବିଭିନ୍ନ କ୍ରିୟାକର୍ମର ପରିବେଷଣ ସମ୍ପର୍କରେ ଆଲୋଚନା କରିବାକୁ ପ୍ରୟାସ କରାଯାଇଛି ।*

*ପ୍ରମୁଖ ଶବ୍ଦ (Keywords) - ବିଶ୍ୱାସ, (ଅନ୍ଧ)ବିଶ୍ୱାସ,ଦୈନନ୍ଦିନ ଜୀବନଧାରା, ଜନ୍ମ-ମୃତ୍ୟୁ-ବିବାହ (Rite de-Passages), ପରମ୍ପରା, ପରିବେଷଣ*

ଓଡିଶାରେ ବାଷଠି ଗୋଷ୍ଠୀର ଆଦିବାସୀ ବସବାସ କରନ୍ତି– ବାଗତା, ବୈଗା, ବଞ୍ଜାରା (ବଞ୍ଜାରି), ବାଥୁଡି, ଭୋତଡା (ଧୋତଡା), ଭୂୟାଁ (ଭୂଇୟାଁ), ଭୂମିଆ, ଭୂମିଜ, ଭୁଞ୍ଜିଆ, ବିଞ୍ଝାଲ, ବିଞ୍ଜିଆ (ବିଞ୍ଜୋଆ), ବିରହୋର, ବଣ୍ଡା ପରଜା, ଚେଞ୍ଚୁ, ଦାଲ, ଦେଶିଆ ଭୂମିଜ, ଧାରୁଆ, ଡିଡାୟୀ, ଗାଦବା, ଘରା, ଗଣ୍ଡ (ଗୋଣ୍ଡ), ହୋ, ହଲବା, ଜଟାପୁ, ଜୁଆଙ୍ଗ, କନ୍ଧ ଗଉଡ, କୱାର, ଖଡିଆ (ଖଡିଆନ୍), ଖରୱାର, କନ୍ଧ (ନାଙ୍ଗୁଳି କନ୍ଧ, ସିତା କନ୍ଧ), କିସାନ, କୋହ୍ଲ, (କୋହ୍ଲ ଲୋହରା), କୋଲ, କୋଲି (ମହ୍ଲାର), କୋଣ୍ଡାଦୋରା, କୋରା, କୋରୁଆ, କୋଟିଆ, କୋୟା, କୁଲି, ଲୋଧା, ମାଡିଆ, ମାହାଲି, ମାଙ୍କଡି, ମାଙ୍କିରଡିଆ, ମାଟିଆ, ମିର୍ଦ୍ଧା, ମୁଣ୍ଡା (ମୁଣ୍ଡା ଲୋହରା, ମୁଣ୍ଡା ମାହାଲି), ମୁଣ୍ଡାରି, ଓରାଓଁ, ପାରେଙ୍ଗା, ପରଜା, ପେଣ୍ଟିଆ, ରାଜୁଆର, ସାନ୍ତାଳ, ସଉରା (ସବର, ସହରା), ଶବର (ଲୋଧା), ସାଉଂଟି, ଥାରୁଆ । ସେହିପରି, ସହାବସ୍ଥିତ ତଥା ମିତାନ୍ ଜାତି ଭାବରେ ବଢେଇ, ବାଉରି, ବେଲଦାର, ଭୋଇ, ଚମାର, ସତନାମୀ, ବାରିକ, ଡମ, ଗଣା (ଗାଣ୍ଡା), କେଳା, ଘୋଗିଆ, ଧୋବା, କୁମ୍ଭାର, ମାଳି, ତେଲି, ଅଗରିଆ ଆଦି ଗୋଷ୍ଠୀ ବସବାସ କରନ୍ତି । ଉତ୍ତର ଓଡିଶାରେ ସାନ୍ତାଳ ଓ ମୁଣ୍ଡାମାନେ ନିଜକୁ 'ହଲ-ମିତାନ୍' କହନ୍ତି । ଏମାନେ କୁଡୁମୀ ଜାତିକୁ 'କୁଣବୀ ହଲ୍' କହିଥାନ୍ତି । ଏହି ସମସ୍ତ ଗୋଷ୍ଠୀ କୃଷିକାର୍ଯ୍ୟ ସହିତ ସମ୍ପୃକ୍ତ । କେବଳ କୃଷିରେ ନୁହେଁ ଜନ୍ମ, ବିବାହ, ମୃତକର୍ମରେ ମଧ୍ୟ ପରସ୍ପରକୁ ଗୁଆ ଦେବା ବା ନିମନ୍ତ୍ରଣ କରିବାର ପ୍ରଥା ଅଛି ତଥା ଆନୁଷ୍ଠାନିକ ଭାବରେ ବିଭିନ୍ନ କର୍ମ ସମ୍ପାଦନ କରିବା ଦେଖିବାକୁ ମିଳେ । ଆଦିବାସୀ ଅଞ୍ଚଳରେ ମିତାନ୍ ଗୋଷ୍ଠୀରେ ବିଭିନ୍ନ ରୀତିନୀତି, ପର୍ବପର୍ବାଣି, ସାମାଜିକ ଆଦାନପ୍ରଦାନ ସ୍ୱତନ୍ତ୍ର ଭାବରେ ପାଳନ କରାଯାଉଥିଲେ ମଧ୍ୟ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏଣୁ ଏହି ଗୋଷ୍ଠୀକୁ ମିତାନ୍ ଗୋଷ୍ଠୀ ଭାବରେ ପରିଗଣିତ କରାଯାଏ । ଉପକୂଳ ଓଡିଶାରେ ଏହି ଗୋଷ୍ଠୀଗୁଡିକ ସହିତ ଆଦିବାସୀ ଗୋଷ୍ଠୀ ସହାବସ୍ଥାନ କରୁନଥିବାରୁ ସେମାନଙ୍କ ସାମାଜିକ ରୀତିନୀତି ଆଦିବାସୀ ଗୋଷ୍ଠୀର ରୀତିନୀତି ସହ ବିଶେଷ ସାମଞ୍ଜସ୍ୟ ରଖେ ନାହିଁ । କେବଳ ଉତ୍ତର ଓଡିଶା ନୁହେଁ ଓଡିଶାର ଅନ୍ୟ ଅଞ୍ଚଳରେ ମଧ୍ୟ ଏହିଭଳି ବିଭିନ୍ନ ଜାତି ଓ ପ୍ରଜାତି ଭିତରେ ପାରସ୍ପରିକ ଆନୁଷ୍ଠାନିକ ସମ୍ପର୍କ ଦେଖିବାକୁ ମିଳେ । ପ୍ରତ୍ୟେକ ଅନୁଷ୍ଠାନରେ ଦେବଦେବୀଙ୍କ ପୂଜା ଆୟୋଜନ, ସାମାଜିକ କାର୍ଯ୍ୟକଳାପରେ ସମସ୍ତ ଜାତି ଗୋଷ୍ଠୀର ଭୂମିକା ଦେଖିବାକୁ ମିଳେ ଯେପରି ଗଉଡ ହାତର ଘିଅ, ଗୋରସ; ମାଳି ହାତର ଫୁଲ; କଣ୍ଡରା ବା ମାହାର ହାତର ବାଉଁଶ, ଚାଙ୍ଗୁଡି; କୁମ୍ଭାର ହାତର ରୁଖା, ଦୀପ, କଳସ; କେଉଟ ଆଉ ମାଳି ହାତର ଖଇ; ତେଲି ହାତର ତେଲ, ଝରା; ଲୋହରା ହାତର ଶିକଳା, ଶୁକୁନ; ଘାସି ହାତର ଗୋବର; ଗଣା ହାତର କପଟା (ବାଏନ), ବାଜା; ଜାନୀ-ଝାଁକର ହାତର ପୁଞ୍ଜି; ଧୋବା ହାତର ଚୂନା, ଗୁଣା ଆଦି ଆବଶ୍ୟକ ହୋଇଥାଏ[1] । ଏସବୁ ଏକ ଭୌଗୋଳିକ ପରିବେଶରେ ସହାବସ୍ଥିତ ସମସ୍ତ ଜାତିଙ୍କର

ସାମୂହିକ ଜୀବନ, ଓ ମୈତ୍ରୀଭାବର ପ୍ରକାଶକ । ଭାରତୀୟ ଜାତି ପରମ୍ପରାରେ ଆମେ ଯଦିଓ ଅସ୍ପୃଶ୍ୟତା ତଥା ଛୁଆ-ଅଛୁଆଁ ଭାବଭେଦ ଦେଖିଥାଉ ଓ ଏହାର ପ୍ରଭାବ ସମ୍ପ୍ରତି ମଧ୍ୟ ବଳବତ୍ତର ତଥାପି ଏହି ମିତାନ୍ ଅଞ୍ଚଳଗୁଡିକରେ ଧର୍ମୀୟ ଉତ୍ସବ, ଜନ୍ମ-ବିବାହ-ମୃତ୍ୟୁ ଆଦି ସାମାଜିକ ସଂସ୍କାର, ବିଭିନ୍ନ କୃଷି ଆଧାରିତ ପର୍ବପର୍ବାଣିରେ ସମସ୍ତଙ୍କ ଅଂଶଗ୍ରହଣ ଦେଖିବାକୁ ମିଳେ ।

ଆଦିବାସୀ ଓ ମିତାନ୍ ଗୋଷ୍ଠୀରେ ତଥା ସହାବସ୍ଥିତ ଅଞ୍ଚଳରେ ସମ୍ପୃକ୍ତ ଗୋଷ୍ଠୀର ପାରମ୍ପରିକ ସାମାଜିକ ସଂରଚନାରେ ମାହାଲକାରିଆ, ଜଲଙ୍ଗିଆ, ବିରଥିଆ, ସିଆନ, ନାଇକ, ଜାନୀ, ଶିରା-ଗୁନିଆ, ଗୀତକୁଡିଆ / ଗୀତକୁଡିଏନ, ସୂତରେନ୍, ପଁଚ, ପାଲି, ଭାତ, ବନ୍ଧୁ-କୁଟୁମ୍ବ ଭଳି ବିଭିନ୍ନ ସାମାଜିକ ସାଂସ୍କୃତିକ ପ୍ରତିନିଧି ତଥା ଅନୁଷ୍ଠାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ଦେଖିବାକୁ ମିଳେ । ଏମାନଙ୍କ ଅନୁପସ୍ଥିତିରେ କୌଣସି ସାମାଜିକ ସାଂସ୍କୃତିକ କାର୍ଯ୍ୟ ପାରମ୍ପରିକ ଭାବେ ହୋଇପାରେ ନାହିଁ । ଏହି ପ୍ରତିନିଧିମାନଙ୍କୁ ସମାଜରେ ସେମାନଙ୍କ ଭୂମିକା ଦୃଷ୍ଟିରୁ ତଥା ଆଲୋଚନାକୁ ଶୃଙ୍ଖଳିତ କରିବା ପାଇଁ ନିମ୍ନ ଭାବରେ ଉଲ୍ଲେଖ କରାଯାଇପାରେ—

**କ) ବ୍ୟକ୍ତି ପ୍ରତିନିଧି**

1. ପୂଜା-ପର୍ବ ସମ୍ପୃକ୍ତ ପ୍ରତିନିଧି
2. ସାମାଜିକ ରୀତିନୀତି ସମ୍ପୃକ୍ତ ପ୍ରତିନିଧି
3. ଆମୋଦପ୍ରମୋଦ ସମ୍ପୃକ୍ତ ପ୍ରତିନିଧି
4. ପ୍ରଜାତିକ ପ୍ରତିନିଧି

**ଖ) ଆନୁଷ୍ଠାନିକ ପ୍ରତିନିଧି**

1. ପଁଚ
2. ଭାତ
3. ବନ୍ଧୁ-କୁଟୁମ୍ବ

ଏହି ସାମାଜିକ ସାଂସ୍କୃତିକ ପ୍ରତିନିଧିମାନଙ୍କ ଓ ଅନୁଷ୍ଠାନର ଭୂମିକା ତଥା ଦାୟିତ୍ୱ ବିଷୟରେ ନିମ୍ନରେ ସଂକ୍ଷେପରେ ଆଲୋଚନା କରାଯାଇପାରେ-

**କ) ବ୍ୟକ୍ତି ପ୍ରତିନିଧି :** ଆଦିବାସୀ ତଥା ମିତାନ୍ ଗୋଷ୍ଠୀରେ ବିଭିନ୍ନ ସାମାଜିକ ସାଂସ୍କୃତିକ ଉତ୍ସବ, ପର୍ବ ଆଦି ଆୟୋଜନ ଓ ପାଳନକୁ ଶୃଙ୍ଖଳିତ କରିବା ପାଇଁ ଯୋଗ୍ୟ ମନେକରାଯାଉଥିବା ବ୍ୟକ୍ତିଙ୍କୁ ସମ୍ପୃକ୍ତ ଗୋଷ୍ଠୀର ସଦସ୍ୟଙ୍କୁ ସାମୂହିକ ସ୍ୱୀକୃତିର ସହ ଦାୟିତ୍ୱ ଅର୍ପଣ କରାଯାଇଥାଏ । ଏମାନେ ବିଭିନ୍ ପୂଜା ପର୍ବରେ, ସାମାଜିକ ରୀତିନୀତିରେ ଆମୋଦପ୍ରମୋଦ ସମୟରେ ନିଜ ନିଜର ଭୂମିକା ଶୃଙ୍ଖଳିତ ଭାବରେ ତୁଲାଇଥାନ୍ତି । ନିମ୍ନରେ ବିଭିନ୍ନ ଅନୁଷ୍ଠାନରେ ବ୍ୟକ୍ତି ପ୍ରତିନିଧି ଓ ସେମାନଙ୍କ ଭୂମିକା ବିଷୟରେ ସଂକ୍ଷେପରେ ଉଲ୍ଲେଖ କରାଯାଇପାରେ—

**1. ପୂଜା-ପର୍ବ ସମ୍ପୃକ୍ତ ପ୍ରତିନିଧି:** ଗ୍ରାମର ସମସ୍ତ ପୂଜା ପର୍ବପର୍ବାଣିର ସମସ୍ତ ଦାୟିତ୍ୱ ତୁଲାଇଥାନ୍ତି ପୂଜାରୀ । ବିହନ ଛିନା, ମାଟି ଦେବତା ପୂଜା, ଭୀମାବିହା ଆଦି ପାଳନ ସମୟରେ ଏମାନଙ୍କ ମୁଖ୍ୟ ଭୂମିକା ଦେଖିବାକୁ ମିଳେ । ଏମାନେ ନିଜର ସାଂସ୍କୃତିକ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଗ୍ରାମବାସୀଙ୍କ ତରଫରୁ ପାରିଶ୍ରମିକ ଭାବେ କିଛି ଜମି ଦିଆଯାଇଥାଏ । କନ୍ଧ, ପରଜା (ପେଙ୍ଗୁ) ଗୋଷ୍ଠୀରେ ପୂଜାରୀଙ୍କୁ ଜାନୀ ତଥା ତାଙ୍କର ସାହାଯ୍ୟକାରୀଙ୍କୁ 'ଇଞ୍ଜା ଜାନୀ' କୁହାଯାଏ । ଜାନୀ ବିଭିନ୍ନ ଆଦିବାସୀ ଗୋଷ୍ଠୀରେ ପଲାସୀ, ନାଗମ୍, ଦେହୁରୀ, ପୂଜାରୀ, ନାୟେକେ, ବଡନାୟକ, ୱାଡେ, ବୁଇତା ନାମରେ ମଧ୍ୟ ପରିଚିତ ।

ଆଦିବାସୀ ତଥା ସହାବସ୍ଥିତ ମିତାନ୍ ଜାତିରେ ଯେଉଁମାନେ ବୈଦ୍ୟକର୍ମ, ଗୁଣିଗାରେଡି, ତଥା ଖରାପ ଡୁମା ବା ଭୂତପ୍ରେତ ଛଡାନ୍ତି, ଯେଉଁମାନେ କାଳିସୀ ଲାଗନ୍ତି ସେମାନଙ୍କୁ 'ଶିରା' କୁହାଯାଏ । ପ୍ରତ୍ୟେକ ଗାଁରେ ଏକାଧିକ ଶିରା ଦେଖାଯାଆନ୍ତି । କୋୟା ଗୋଷ୍ଠୀରେ ଏମାନଙ୍କୁ ୱାଡେ; ବଣ୍ଡା, ଗାଦବା, ଭୂମିଆ, କନ୍ଧ ଆଦି ଗୋଷ୍ଠୀରେ ଦିଶାରି, ତଥା ମିତାନ୍ ଜାତିଗୁଡିକରେ ଏମାନେ ଶିରା ଭାବରେ ପରିଚିତ । ଶିରା ଦେହରେ ଡୁମା ବା ଦେବତା ପ୍ରବେଶ କରିବା ପରେ ସେ ଉପସ୍ଥିତ ସଦସ୍ୟଙ୍କର ସମସ୍ୟାର ସମାଧାନ କରିଥାନ୍ତି । ବିଭିନ୍ନ ରୋଗଶୋକ ଭଲ କରିବା ପାଇଁ ତଥା ଡୁମା ଭଗେଇବା ପାଇଁ ଶିରାମାନେ ନିଜ ଭାଷାରେ ମନ୍ତ୍ର ଅନୁରୂପ ଆଖ୍ୟାନ ଉଚ୍ଚାରଣ କରିଥାନ୍ତି, ବେଳେବେଳେ ଏହା ବୁଝିବା ସମ୍ଭବ ହୋଇନଥାଏ, କେବଳ ପୂଜାରୀ ହିଁ ସେସବୁର ଅର୍ଥ କରିପାରନ୍ତି । ପୂଜାରୀ ତଥା ଜାନୀଙ୍କଦ୍ୱାରା ଉପରେ ଶିରା ଦେହରେ ଦେବୀ ବା ଦେବତା ନିଜେ ଅବତୀର୍ଣ୍ଣ ହୋଇ କଥା କହନ୍ତି । ଏହି ସମୟରେ ଦୈବିକ ଚେତନାଦ୍ୱାରା ସେ ନିୟନ୍ତ୍ରିତ ହୋଇ ନିଜର ବ୍ୟକ୍ତିସତ୍ତା କିଛି କ୍ଷଣ ପାଇଁ ହରାଇଥାନ୍ତି । ଜାନୀ ନିଜର ତଥା ଗ୍ରାମର ବ୍ୟକ୍ତିଗତ ଓ ସାମୂହିକ ସମସ୍ୟା ଶିରା ଆବାହିତ ଦେବୀଦେବତାଙ୍କୁ ଜଣାଇ ଥାଆନ୍ତି । ସେମାନେ ସେସବୁର ସମାଧାନ ପାଇଁ ବାଟ ବତାଇଥାନ୍ତି । ରୋଗଶୋକ, ଆପଦବିପଦ, ପାରିବାରିକ, ସାମୂହିକ କର୍ମ, ପର୍ବପର୍ବାଣି ଧର୍ମାଚାର ବେଳେ ଶିରା ଦେହରେ କାଳିସୀ ଲାଗେ । ଦେବୀଦେବତା ବା ଶିରାମାନେ ନିଜର କରତୁତ୍ ଦେଖାଇବା ପାଇଁ କଣ୍ଟା ଦୋଳିରେ ବସିବା, ଝୁଲିବା, ଜିଭରେ ଲୁହା କଣ୍ଟା ଫୋଡିହେବା, ଖଣ୍ଡାରେ ନିଜ ଦେହକୁ କାଟି ହେବା, ନିଆଁରେ ଚାଲିବା ଆଦି କାମ ମଧ୍ୟ କରିଥାନ୍ତି ତଥାପି ଆଧିଦୈବିକ ଚେତନାଦ୍ୱାରା ଆକ୍ରାନ୍ତ ଥିବା ଦିଶାରିଙ୍କର କୌଣସି କ୍ଷତି ହୋଇ ନଥାଏ । ସମ୍ପୃକ୍ତ ଗୋଷ୍ଠୀ ସଦସ୍ୟମାନେ ବି ଏଭଳି କରତୁତ୍ ଦେଖି ବିଶ୍ୱାସ କରିଥାନ୍ତି । ଶିରାମାନେ ଅନେକତ୍ର ଗୁଣିଆ କାମ କରିଥାନ୍ତି । ତେବେ, ପ୍ରାୟ ଗୋଷ୍ଠୀରେ ସ୍ୱତନ୍ତ୍ର ଗୁଣିଆ ମଧ୍ୟ ଦେଖିବାକୁ ମିଳନ୍ତି ।

ଦକ୍ଷିଣ ଓଡିଶାର ଆଦିବାସୀ ଗୋଷ୍ଠୀରେ ମହିଳାମାନେ ମଧ୍ୟ ପୂଜାରୀ ଭାବରେ ଭୂମିକା ନିର୍ବାହ କରିବା ଦେଖିବାକୁ ମିଳେ । ଯେଉଁ ଝିଅ ଦେହରେ କିଛି ଐଶ୍ୱରିକ ସତ୍ତା ଥାଏ ଓ ତା ଦେହରେ ଦେବୀଦେବତା ପ୍ରବେଶ କରିଥାନ୍ତି । ତେବେ, ସାଧାରଣତଃ ଏହା ଗୁଣିଆ ବା ଶିରାମାନଙ୍କଦ୍ୱାରା ସ୍ଥିର କରାଯାଇଥାଏ । ଯେଉଁ ଝିଅ ଗୁରୁମାଇ ହେବାକୁ ଥାଏ ସେ ରଜସ୍ୱଳା ହେବା ପୂର୍ବରୁ ଗୁରୁ ତାଙ୍କର ତଥା ତାଙ୍କର ପିତାମାତାଙ୍କ ଅନୁମତି ନେଇ ତାଙ୍କୁ ବିଦ୍ୟା ବା ପାରମ୍ପରିକ ପୂଜାବିଧି ଶିକ୍ଷା ଦେବା ସହିତ ଗୋଟିଏ ଶୁଭ ଦିନ ଦେଖି ଦୀକ୍ଷିତ କରାଯାଏ । ବିଭିନ୍ନ ପର୍ବପର୍ବାଣି ଦିନ, ବାଲି ଯାତ୍ରା ତଥା

ISSN: 2456-9194, Vol. III, Issue. III, Dec 2019

ଭୀମାବିହା ଆଦି ସମୟରେ ବାଜା ବାଜିବା ମାତ୍ରେ ଗୁରୁମାଇଙ୍କ ଦେହରେ ଦେବୀଦେବତା ସବାର ହୋଇଥାନ୍ତି । ଗୁରୁମାଇମାନେ ଧୁନକେଲ ବଜାଇ ନିଜ ଭାଷାରେ ମନ୍ତ୍ର ପଢିଥାନ୍ତି । ବାଳ ମୁକୁଳା କରି ନାଚନ୍ତି । ଗ୍ରାମବାସୀ ତା ଆଗରେ ସମସ୍ୟା ଉପସ୍ଥାପନ କରିଥାନ୍ତି। ସେ ସେହି ସମସ୍ୟାର ସାମାଧାନ ବତାଇଥାନ୍ତି ।



ବାହାବଙ୍ଗା (ସାନ୍ତାଳୀ): ମଡେହଲ ବା ସିଆନମାନଙ୍କ ସହିତ ନାୟେକେ
ସୌଜନ୍ୟ: ଗଣେଶ ମୁର୍ମୁ

ସାଧାରଣତଃ ତିନି ପ୍ରକାର ଗୁରୁମାଇ ଦେଖିବାକୁ ମିଳନ୍ତି- ପାଟ ଗୁରୁମାଇ, ଶିରା ଗୁରୁମାଇ, ଗୁଣିଆ ଗୁରୁମାଇ। ପାଟ ଗୁରୁମାଇ ବିଶେଷ କରି ବାଲି ଯାତ୍ରାରେ ପୂଜା କାର୍ଯ୍ୟ କରିଥାନ୍ତି ଏମାନଙ୍କ ବିନା ବାଲି ଯାତ୍ରା ତଥା ଅନ୍ୟାନ୍ୟ ପୂଜାପାଠ ଆୟୋଜନ ହେବା ଅସମ୍ଭବ । ଏମାନେ ଜାନୀଙ୍କ ଭଳି ପୂଜା କାର୍ଯ୍ୟ ତୁଲାଇଥାନ୍ତି । ସେହିପରି, ଯେଉଁ ଗୁରୁମାଇ ଉପରେ ଡୁମା, ଦେବତା ସବାର ହୁଅନ୍ତି ସେ ଶିରା ଗୁରୁମାଇ । ଗାଁରେ ପ୍ରାକୃତିକ ବିପର୍ଯ୍ୟୟ, ଝାଡାବାନ୍ତି ହେଲେ ସେ ଏହାର କାରଣ ବ୍ୟାଖ୍ୟା କରିବା ସହିତ ପ୍ରତିକାର କରିଥାନ୍ତି। ଅନୁରୂପ ଭାବରେ, ପାଙ୍ଗନନାଶନ, ରୋଗ ଆଦି ଭଲ କରିବା ପାଇଁ ଝଡାଫୁଙ୍କା ତଥା ମନ୍ତ୍ରତନ୍ତ୍ର କରିପାରୁଥିବା ଗୁରୁମାଇଙ୍କୁ ଗୁଣିଆ ଗୁରୁମାଇ କୁହାଯାଏ । କନ୍ଧ ଗୋଷ୍ଠୀରେ ଗୁରୁମାଇ ବେଜୁଣୀ ତଥା ପେଜୁଣୀ ଭାବରେ ପରିଚିତ । ପରଜା, କନ୍ଧ ଭଳି କେତେକ ଗୋଷ୍ଠୀରେ ଏମାନେ ବିବାହ ଆଦିକାର୍ଯ୍ୟ ମଧ୍ୟ କରିଥନ୍ତି। ଏପରିକି ପରିବାର ମଧ୍ୟରେ ଗୋରୁଗାଈ, ଛେଳିମେଣ୍ଢା, କୁକୁଡା-ବତକ ପଶୁପକ୍ଷୀ ମରିଯାଉଥିଲେ ଫସଲରେ ରୋଗ, ପୋକ ଲାଗିଲେ, ଗ୍ରାମରେ ଅଶୁଭ ଦେଖାଦେଲେ ମଧ୍ୟ ଗୁରୁମାଇ ଡକାଇ ପୂଜା ତଥା ବିଧିବିଧାନ କରାଯାଇଥାଏ ।

**2. ସାମାଜିକ ରୀତିନୀତି ସମ୍ପୃକ୍ତ ପ୍ରତିନିଧି:** କେବଳ ଆଦିବାସୀ କିମ୍ବା ମିତାନ୍ ଗୋଷ୍ଠୀରେ ନୁହେଁ, ସମସ୍ତ ଗୋଷ୍ଠୀ ଜୀବନରେ ଜନ୍ମ, କର୍ମ, ବିବାହ, ମୃତ୍ୟୁ ଆଦି ଅନୁଷ୍ଠାନ ଗୁରୁତ୍ୱପୂର୍ଣ୍ଣ ଭୂମିକା ରଖେ । ଏହି ସବୁ ଅନୁଷ୍ଠାନକୁ ସୁଚାରୁ ରୂପେ ପାଳନ ଓ ପରିବେଷଣ କରିବା ପାଇଁ ପ୍ରତ୍ୟେକ ଗୋଷ୍ଠୀରେ ସ୍ୱ–ଅବଧାରଣା ସହିତ ବିଭିନ୍ନ ନୀତିନିୟମମାନ ପାଳନ କରାଯାଏ ତଥା ଏହାର ସୁପରିଚାଳନା ପାଇଁ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଭୂମିକା ଦେଖିବାକୁ ମିଳେ ।

ଆଦିବାସୀ ତଥା ଅନେକ ମିତାନ୍ ଗୋଷ୍ଠୀରେ ପାରମ୍ପରିକ ଭାବେ ପ୍ରସୂତୀର ପ୍ରସବ କରାଯାଉଥିଲେ ସୂତରେନ୍ ବା ପ୍ରସବ କର୍ମରେ ଅଭିଜ୍ଞ ମହିଳାଙ୍କୁ ଡକାଯାଇଥାଏ । ସେ ପ୍ରସବ କର୍ମରେ ସାହାଯ୍ୟ କରିବା ସହ ଜନ୍ମଠାରୁ ବେଶ କିଛି ଦିନ ପର୍ଯ୍ୟନ୍ତ ଶିଶୁର ଯତ୍ନ ନେବାରେ ସାହାଯ୍ୟ କରିଥାନ୍ତି । ପିଲାକୁ ଗାଧୋଇବା, ତେଲ ଲଗାଇବା ସେକିବା କାମ ଆଦି କରିଥାନ୍ତି । ଆଜିକାଲି ସରକାରୀ ଚିକିତ୍ସାଳୟରେ ପ୍ରସବ କରାଇବା ପାଇଁ ଉତ୍ସାହିତ କରାଯାଉଥିଲେ ମଧ୍ୟ ଜନ୍ମ ପରବର୍ତ୍ତୀ ଯତ୍ନନେବା ପାଇଁ ଏହି ସୂତରେନ ବା ସିଆନ ମହିଳାଙ୍କୁ ଡାକିବା ଦେଖାଯାଏ ।

ସେହିପରି, ବିବାହ ଆଦି କାର୍ଯ୍ୟରେ ମଧ୍ୟ ବିଭିନ୍ନ ଗୋଷ୍ଠୀ ପ୍ରତିନିଧି ଆବଶ୍ୟକ ହୋଇଥାନ୍ତି ଯେପରି, ମାହାଲା ବା ମାହାଲକାରିଆ, ଧଙ୍ଗଡାମାଝୀ, ଲଗନକାରିଆ, ଜଲଙ୍ଗିଆ। ବର ଓ କନ୍ୟା ଦୁଇ ପକ୍ଷ ମଧ୍ୟରେ ମଧ୍ୟସ୍ଥି ଭାବରେ କାମ କରୁଥିବା ବ୍ୟକ୍ତି ମାହାଲକାରିଆ ବା ମାହାଲା ଭାବରେ ପରିଚିତ । ମାହାଲାମାନଙ୍କୁ ସେମାନଙ୍କ ଭୂମିକା ଆଧାରରେ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ ଯଥା, ସମଦାନ ବା ସଗା ମାହାଲା, ଚିନାରି ମାହାଲା, ଓ ଜନାରି ମାହାଲା । ସମଦାନ ମହାଲା କହିଲେ ବିବାହ ଯୋଗ୍ୟ ପୁଅ ଝିଅ ସମ୍ବନ୍ଧରେ ବନ୍ଧୁବାନ୍ଧବଙ୍କଠାରୁ ତଥ୍ୟ ନେଇ ପୁଅ ପାଇଁ ଝିଅର ହାତ ମାଗିବାକୁ ଯାଆନ୍ତି । ଏହାକୁ ସମ୍ବନ୍ଧ ସ୍ଥାପନ ବା ସମଦାନ ବା ସଗା ମାହାଲା କୁହାଯାଏ । ଚିନାରି ମାହାଲା ସମ୍ବନ୍ଧ କଥା ହେବାର ପରଦିନ ସକାଳେ ଝିଅ ଗାଁର ସମସ୍ତଙ୍କୁ ଖବର ପଠାନ୍ତି । ଖବର ପାଇ ସମସ୍ତେ ରୁଣ୍ଡ ହୁଅନ୍ତି । ତା' ପୂର୍ବଦିନ ରାତିରେ ପୁଅ ଘର ଝିଅ ଘରକୁ ଦେଇଥିବା ଲିଆ, ଚୁଡାଗୁଡ, ପିଠା, ସଲପ, ମଦ ଯାହା ରାତିରେ ସମସ୍ତେ ଖାଇବାପରେ ବଳି ଯାଇଥାଏ ସେଗୁଡିକୁ ମାହାଲକାରିଆମାନେ ନଡିଆ ଭାଙ୍ଗି ପୂଜା କଲା ପରେ ଖାଇଥାନ୍ତି । ତା'ପରେ ସମସ୍ତଙ୍କ ଉପସ୍ଥିତିରେ ଝିଅ ଘର ଲୋକେ ଏହି ସମ୍ବନ୍ଧକୁ ସ୍ୱୀକାର କରନ୍ତି । ସମ୍ବନ୍ଧ ସ୍ଥାପନ ପରେ ପୁଅଝିଅ ବିବାହ କାର୍ଯ୍ୟ ସମ୍ପାଦନକୁ ଜନାରି ମାହାଲା କରିଥାନ୍ତି । ତେବେ, ଉଲ୍ଲେଖନୀୟ ଯେ ମାଆବାପା ତଥା ସମାଜଦ୍ୱାରା ସ୍ଥିରିକୃତ ବିବାହକୁ ମାହାଲା ବିବାହ ମଧ୍ୟ କୁହାଯାଇଥାଏ । ମାହାଲା ଅଞ୍ଚଳ ତଥା ଗୋଷ୍ଠୀ ଭେଦରେ ମାହଲକାରିଆ, ରାଇବାଡିଆ, ଧାଙ୍ଗଡାମାଂଝି ଆଦି ଭାବରେ ମଧ୍ୟ ପରିଚିତ ।

ମାହାଲକାରିଆଙ୍କ ପରି ପ୍ରାୟ ସମସ୍ତ ଆଦିବାସୀ ଓ ମିତାନ୍ ଗୋଷ୍ଠୀରେ ବିବାହ କାର୍ଯ୍ୟରେ ଜଲଙ୍ଗିଆ ପ୍ରମୁଖ ଭୂମିକା ନିର୍ବାହ କରିଥାନ୍ତି । ମୋଡୋଗନସନ ଦିନ ବରଘର ପକ୍ଷରୁ ଦୁଇ ତିନୋଟି ଗାମୁଛା, ଚାଉଳ ଟଙ୍କା ଧରି କନ୍ୟା ଘରକୁ ଯାଇଥାନ୍ତି । ସେ

କନ୍ୟାକୁ 'କାକନ (ହଳଦୀ ସୂତାରେ ବନ୍ଧା ଆମ୍ବ ପତ୍ର)' ବାନ୍ଧନ୍ତି । କନ୍ୟା ଗାଆଁର ପୂଜାରୀ, ଓ ଗଣାଙ୍କୁ କେତେକ ଅଞ୍ଚଳରେ ନରିଆ ବା ଗାଁର ଗଉଡକୁ ଗୋଟିଏ ଗୋଟିଏ ଗାମୁଛା ସହିତ ଚାଉଳ ଆଉ ଟଙ୍କା ଦିଅନ୍ତି। ସମ୍ପୃକ୍ତ ଗୋଷ୍ଠୀରେ ପ୍ରାୟ ଜଣେ ଦୁଇ ଜଣ ନିର୍ଦ୍ଦିଷ୍ଟ ବ୍ୟକ୍ତି ଥାଆନ୍ତି ଯିଏ ଜଲଙ୍ଗିଆ ଭାବରେ ଏହି କାର୍ଯ୍ୟ ତୁଲାଇଥାନ୍ତି ଅବଶ୍ୟ ସେମାନଙ୍କ ଅନୁପସ୍ଥିତିରେ ସମ୍ପୃକ୍ତ ସମାଜ ଅନ୍ୟ କୌଣସି ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ଏହି ଦାୟିତ୍ୱ ଦିଆଯାଇଥାଏ । ଜଲଙ୍ଗିଆ ବିବାହ ଉତ୍ସବକୁ ଆସିବା ପାଇଁ ମଧ ଘରଘର ବୁଲି ଡାକିଥାନ୍ତି, ଅର୍ଥାତ୍ କୌଣସି ଏକ ନିର୍ଦ୍ଦିଷ୍ଟ ରୀତିନୀତି ଅନୁଷ୍ଠାନ ସମୟରେ ସେ ଘରଘର ବୁଲି ସେହି ଅନୁଷ୍ଠାନରେ ଉପସ୍ଥିତ ରହିବା ପାଇଁ କହିଥାନ୍ତି। ଏପରିକି କନ୍ୟା ଘରେ ମଧ କିଛି ବିବାହ ସମ୍ପର୍କିତ ଘରୋଇ କାର୍ଯ୍ୟରେ ସାହାଯ୍ୟ କରିବା ଦେଖାଯାଏ । ଆଜିକାଲି ପରିବର୍ତ୍ତିତ ସମୟ ଓ ପରିସ୍ଥିତିରେ, ଅଞ୍ଚଳ ଭେଦରେ ଜଲଙ୍ଗିଆ କେବଳ ସାଂସ୍କୃତିକ କର୍ତ୍ତବ୍ୟ ନିର୍ବାହ କରିବା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ କରିବା ଆଉ ଦେଖାଯାଉନାହିଁ ।

ପାରମ୍ପରିକ ସମାଜରେ ସିଆନ୍ ବା ବୟସ୍କ ବ୍ୟକ୍ତିଙ୍କ ଭୂମିକା ଉଲ୍ଲେଖନୀୟ । ବିଭିନ୍ନ ସାମାଜିକ ସାଂସ୍କୃତିକ ରୀତିନୀତି, ଅନୁଷ୍ଠାନ, ନୀତି ନିର୍ଦ୍ଧାରଣରେ ସିଆନ୍ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ସିଆନମାନଙ୍କ ଅନୁପସ୍ଥିତିରେ କୌଣସି ଦେବଦେବୀଙ୍କ ପୂଜା ହେବା ସମ୍ଭବ ନୁହେଁ । ସେହିପରି, ବିଭିନ୍ନ ସାମାଜିକ ରୀତିନୀତି ବିଶେଷ କରି ଜନ୍ମ-ମୃତ୍ୟୁ-ବିବାହ, ପ୍ରାକ୍-ବିବାହ ଓ ମୃତ୍ୟୁ-ପର ରୀତିନୀତିଗୁଡିକ ମଧ ସିଆନମାନଙ୍କ ବିନା ଆୟୋଜନ କରିବା ଅସମ୍ଭବ ହୋଇଥାଏ । ଝିଅମାନେ ପ୍ରାପ୍ତ-ବୟସ୍କ ହେଲାବେଳେ ସାଧାରଣତଃ ସେ ସମ୍ପର୍କିତ ରୀତିନୀତି ବିଧିବିଧାନ ମଧ ସିଆନ ମହିଳାମାନଙ୍କ ଦ୍ୱାରା ହିଁ କରାଯାଏ । ସିଆନମାନଙ୍କୁ 'ପରମ୍ପରା ବାହକ (tradition bearer)' ଭାବରେ ମଧ ଦେଖାଯାଇପାରେ । ଏମାନେ ପରମ୍ପରାର ଠିକ୍ ପରିବେଷଣ କରିବା ସହିତ ପରପିଢିକୁ ସେ ସମ୍ପର୍କରେ ଅବଗତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି ଏଣୁ ଏମାନଙ୍କୁ ପରମ୍ପରାର ଶକ୍ତିଶାଳୀ ବାହକ ଭାବରେ ଗଣନା କରାଯାଏ[2] ।

ଜନ୍ମ, କରମ, ବିବାହ, ମୃତ୍ୟୁ ସଂସ୍କାର ବ୍ୟତୀତ ଗ୍ରାମ ପରିଚାଳନାରେ ନାଇକ ବା ଗୋଷ୍ଠୀ ତଥା ଅଞ୍ଚଳ ଭେଦରେ ଅନ୍ୟ ପ୍ରତିନିଧି ଥାଆନ୍ତି ଯେଉଁମାନେ ଗ୍ରାମର ପୂଜା, ପରବ, ବିବାହ ଉତ୍ସବ, ସାମାଜିକ ବିଚାରଆଚାର ଆଦିରେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ଏହି ବ୍ୟକ୍ତି ସାଧାରଣତଃ ନାଇକ ଭାବରେ ପରିଚିତ । ତେବେ, ଦୁରୁଆ, ଭୂମିଆ ଆଦି ଗୋଷ୍ଠୀରେ ନାଇକା, କୋୟା ସମ୍ପ୍ରଦାୟରେ ପେଦା, ସଉରା ଗୋଷ୍ଠୀରେ ଗମାଙ୍ଗ; ପରଜା ଗୋଷ୍ଠୀରେ ଚାଲାଣ, ତଥା ସାନ୍ତାଳ, ଓରାଓଁ, ଭୂମିଜ, ମୁଣ୍ଡା ଆଦି ଗୋଷ୍ଠୀରେ ମାଂଝି ଭାବରେ ପରିଚିତ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାଧାରଥଣତଃ ଯେକୌଣସି ଆଦିବାସୀ ଗୋଷ୍ଠୀର ଲୋକ ଗାଁର ନାଇକ ହୋଇପାରନ୍ତି । ପୂର୍ବରୁ ବଂଶ ପରମ୍ପରାକ୍ରମେ ନାଇକର ପୁଅ ହିଁ ନାଇକ ଭାବରେ ନିଯୁକ୍ତ ହେଉଥିଲେ । ସାଧାରଣତଃ ଗାଁର ସିସ୍ତୁ ବା କର ଆଦାୟ ପାଇଁ ରାଜା ବା ମୁସ୍ତାଦାରଙ୍କୁ ସାହାଯ୍ୟ କରୁଥିବା ବ୍ୟକ୍ତିଙ୍କୁ ଗାଁ ନାଇକ ପଦରେ ଅଧିଷ୍ଠିତ କରାଯାଉଥିଲା । ଗାଁକୁ ସାନବଡ କେହି ଆସିଲେ ପ୍ରତ୍ୟେକ ଘରୁ ଚାନ୍ଦାଭେଦା କରି ସେମାନଙ୍କ ପାଇଁ ଖାଇବା ବ୍ୟବସ୍ଥା କରୁଥିଲେ । ବର୍ତ୍ତମାନ ପଞ୍ଚାୟତ ଶାସନ ବ୍ୟବସ୍ଥାରେ ସମ୍ପ୍ରତି ଏମାନଙ୍କ ଭୂମିକା ହ୍ରାସ ପାଇଛି।

**3. ଆମୋଦପ୍ରମୋଦ ସମ୍ପର୍କିତ ପ୍ରତିନିଧି:** ଆଦିବାସୀ ତଥା ମିତାନ୍ ଗୋଷ୍ଠୀରେ ମଧ ଆମୋଦପ୍ରମୋଦର ସମୃଦ୍ଧ ପରମ୍ପରା ଦେଖିବାକୁ ମିଳେ । ଏହି ଆମୋଦପ୍ରମୋଦର ପରମ୍ପରା ଅନେକତଃ ସାମୂହିକ । ନାଚ, ଗୀତ, କଥାନି-କଥନ ଆଦି ଭଳି କେତୋଟି ପ୍ରମୁଖ ଆମୋଦପ୍ରମୋଦର ପରମ୍ପରା ଓ ସେ ସମ୍ପର୍କିତ ପ୍ରତିନିଧିଙ୍କ ବିଷୟରେ ଏଠାରେ ଆଲୋଚନା କରାଯାଇପାରେ । ନାଚ ଗୀତର ଆୟୋଜନ ଓ ପରିବେଷଣ ପାଇଁ ବଜନିଆ, ନଚନିଆ ଆଦିଙ୍କ ବିଶେଷ ଭୂମିକା ଥାଏ । ବିନା ବାଜା ବା ବଜନିଆରେ ନାଚ ଯଦିଓ ସମ୍ଭବ ହେଉଥିଲେ ମଧ ଅନେକତଃ ବାଜା ଏହାକୁ ଆକର୍ଷଣୀୟ କରିଥାଏ ଓ ବିନାବାଜାରେ କ୍ୱଚିତ ନୃତ୍ୟ ଆୟୋଜନ ଦେଖିବାକୁ ମିଳେ । ଆଦିବାସୀ ଓ ମିତାନ ଗୋଷ୍ଠୀରେ ସାଧାରଣତଃ ସ୍ୱ-ପ୍ରସ୍ତୁତ ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇଥାଏ[3] । ପାରମ୍ପରିକ ଭାବରେ ସମସ୍ତ ଗୋଷ୍ଠୀ ନିଜ ନିଜର ବାଦ୍ୟଯନ୍ତ୍ର ବ୍ୟବହାର କରୁଥିଲେ ମଧ ଗଣାବାଜା[4] ବା ଡମ୍ ବାଜାର ଭୂମିକା ଉଲ୍ଲେଖନୀୟ । ସମଗ୍ର ଓଡିଶାର ପ୍ରାୟ ଅଞ୍ଚଳରେ ପାରମ୍ପରିକ ବାଦ୍ୟ ଅନେକତଃ ଗଣା, ଡମ୍ ବା ପାଣମାନେ ହିଁ ପରିବେଷଣ କରିଥାନ୍ତି । ତେବେ, ପଶ୍ଚିମ ଓ ଦକ୍ଷିଣ ଓଡିଶାରେ ଡମ, ଗଣା ବା ଗଣ୍ଡାମାନେ ପରିବେଷଣ କରୁଥିବା ବାଜା ଉପକୂଳ ଓଡିଶାର ବାଜାଠୁ ଅଲଗା । ଏହି ବାଜା କେବଳ ବିବାହ ସମୟରେ ନୁହେଁ, ମୃତ୍ୟୁ ସମୟରେ ମଧ ବାଜିଥାଏ । ମୃତକର୍ମରେ ବାଜୁଥିବା ବାଜାକୁ 'ମରାବାଜା' ବୋଲି କୁହାଯାଏ କାରଣ, ଏ କ୍ଷେତ୍ରରେ କେବଳ 'ମରାପାର' ହିଁ ବାଜେ[5] । ସେହିପରି ଗାଁର ପର୍ବପର୍ବାଣି, ସମସ୍ତ ରୀତିନୀତିରେ ଗଣା ବାଜା ପ୍ରମୁଖ ଭୂମିକା ଗ୍ରହଣ କରିଥାଏ[6] । ସେହିପରି ସାମୂହିକ ନୃତ୍ୟରେ ନୃତ୍ୟ ପରିଚାଳନା ପାଇଁ ପ୍ରତ୍ୟେକ ଗୋଷ୍ଠୀରେ ନଚନିଆଙ୍କ ଭୂମିକା ମଧ ଉଲ୍ଲେଖନୀୟ । ଅନେକ ସମୟରେ ମୁଖ୍ୟ ବାଦକ ବା ଢୋଲିଆ ମଧ କେତେକ କ୍ଷେତ୍ରରେ ଏହି ଭୂମିକା ନିର୍ବାହ କରିଥାନ୍ତି ।



ସାନ୍ତାଳ ଗୋଷ୍ଠୀର ବାହା ପରବ ପରବର୍ତ୍ତୀ ଶିକାର ଯାତ୍ରା: ବାଜା ଓ ବଜନିଆଙ୍କ ଭୂମିକା
ସୌଜନ୍ୟ ଗଣେଶ ମୁର୍ମୁ

କେବଳ ନାଚ ନୁହେଁ ଆଦିବାସୀ ଓ ମିତାନ୍ ଗୋଷ୍ଠୀରେ ଗୀତର ମଧ୍ୟ ଉଲ୍ଲେଖନୀୟ ଭୂମିକା ଦେଖିବାକୁ ମିଳେ । ଜାତି, ଧର୍ମ, ଗୋଷ୍ଠୀ, ବୟସ ନିର୍ବିଶେଷରେ ସମସ୍ତ ଗୋଷ୍ଠୀର ପ୍ରାୟ ଊଣାଅଧିକେ ସଦସ୍ୟ ନିଜନିଜ ପରିବେଶରେ କିଛି ନା କିଛି ଗୀତ ପରିବେଷଣ କରିଥାନ୍ତି । ଜନ୍ମ, ବିବାହ, ମୃତ୍ୟୁ-ପରବର୍ତ୍ତୀ ବିଶେଷ ସଂସ୍କାର, ନାଚ, କୃଷି, ଧାନକୁଟା, ଧାନ ଅମଳ, ପିଲାବୁଝା, ଦେବୀଦେବତା ଆବାହନ, ପରବ ପାଳନ ଆଦି ପାଳନ ସମୟରେ ଗୀତ ଗାନ କରିବା ଦେଖାଯାଏ । ତେବେ, ବିଶେଷ ଅନୁଷ୍ଠାନ ମାନଙ୍କରେ ନିୟମିତ ଗୀତ ପରିବେଷଣକାରୀ ସାଧାରଣତଃ ଗୀତକୁଡିଏନ, ଗୀତକୁଡିଆ ଭାବରେ ପରିଚିତ । ସେହିପରି, ଗୀତଗୁଡିକ ବିଶେଷ ଆୟୋଜନରେ, ନୃତ୍ୟ ପରିବେଷଣରେ, ପର୍ବପର୍ବାଣିରେ, ଦୀର୍ଘ ସମୟ ଧରି କରାଯାଉଥିବା ଶ୍ରମରେ ଶ୍ରମ ଲାଘବ ପାଇଁ ଉଦାହରଣ ସ୍ୱରୂପ, ହଳ କଲା ବେଳେ (ବୋରିଆ, ସଜନୀ, ଜାଇଫୁଲ ଆଦି), ବିବାହର କେତେକ କ୍ରିୟାକର୍ମ ସମ୍ପାଦନ ସମୟରେ କିଛି ଗୋଷ୍ଠୀରେ ମୃତ ସମ୍ପର୍କିତ ବିଶେଷ କର୍ମ ସମୟରେ (ଭୂମିଜଙ୍କ ହାଙ୍କାର ଉଡୁଂ, ଗଣ୍ଡମାନଙ୍କ ମାଣ୍ଡଲପାଟା, ଓ ଗାଦବାମାନଙ୍କ ଗତର), କେତେକ ପାରମ୍ପରିକ କ୍ରୀଡା ପରିବେଷଣ କଲାବେଳେ (ବୋରିଆ, ପୁଚି, ଟଙ୍ଗିଆ ଛନେ ଦିଅ), ତଥା ପିଲା ବୁଝାଇବାକୁ ଯାଇ ମଧ୍ୟ ଘରର ବୟସ୍କ ସଦସ୍ୟ ଗୀତ ପରିବେଷଣ କରିବା ଦେଖାଯାଏ । ସେହିପରି, ଭୁଞ୍ଜିଆ ଗୋଷ୍ଠୀରେ ବିବାହ ସମୟରେ ଦେବୀଦେବତାଙ୍କୁ ସୁମରଣା କରିବା, ହଳଦୀ ଲଗାଇବା, ଗନସନ୍, ଓଲଗାନ୍ (ନିଜ ଗୋଷ୍ଠୀର ବିଭିନ୍ନ ସଦସ୍ୟଙ୍କୁ ପ୍ରଣାମ କରି ଆଶୀର୍ବାଦ ନେବା) ଆଦି ସମୟରେ ଧରମ ଡାକରା ଗୀତ, ହରଦୀଗରଦୀ ଗୀତ, ଗୁଞ୍ଜାରେନ୍ ଗୀତ, ତଥା ଓଲଗାନ୍ ଗୀତ ଆଦି ପରିବେଷଣ କରିବା ଦେଖାଯାଏ । କେବଳ ଭୁଞ୍ଜିଆ ଗୋଷ୍ଠୀ ନୁହନ୍ତି ଅନ୍ୟ ଆଦିବାସୀ ତଥା ମିତାନ୍ ଗୋଷ୍ଠୀରେ ମଧ୍ୟ ଜନ୍ମ ବିବାହ ତଥା ବିଭିନ୍ନ ପର୍ବପର୍ବାଣି ସମୟରେ ଗୀତ ଓ ନୃତ୍ୟର ପରିବେଷଣ ଦୁର୍ଲ୍ଲଭ ନୁହେଁ । ଏହି ଗୀତକୁଡିଏନ, ଗୀତକୁଡିଆମାନେ କଥାନି ମଧ୍ୟ ପରିବେଷଣ କରିଥାନ୍ତି । ଏମାନଙ୍କ ବ୍ୟତୀତ ସାମାଜର ସାଂସ୍କୃତିକ ପ୍ରତିନିଧି ଚହଲିଆ, ସୁତରେନ୍, ମେଲାଭୁତିଆର, ଜଲଙ୍ଗିଆ, ସିଆନ, ଜାନୀ, ଝାଁକର, ଦିଆରି, ଗୁନିଆଁ, ଦେହେଲିଆ ପ୍ରଭୃତି ଓ ଘୋଗିଆ, ପରଘନିଆ, ଭଗୁଆ, ମରାଲ, ବିରଥିଆ ଆଦି ପ୍ରଜାତିକ ଭାଟ, ଏମାନଙ୍କ ପରିବାରର ମହିଳାମାନେ ମଧ୍ୟ କଥାନି ପରିବେଷଣ କରିଥାନ୍ତି ।



ପ୍ରଜାତିକ ପ୍ରତିନିଧି: ପଟୁଆ (ସାନ୍ତାଳୀ)
ସୌଜନ୍ୟ: ଗଣେଶ ମୁର୍ମୁ

**4. ପ୍ରଜାତିକ ପ୍ରତିନିଧି:** ଆଦିବାସୀ ଓ ମିତାନ ଗୋଷ୍ଠୀରେ ବିଭିନ୍ନ ପ୍ରଜାତିକ ପ୍ରତିନିଧିଙ୍କ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଏମାନେ ସମ୍ପୃକ୍ତ ଗୋଷ୍ଠୀର ପ୍ରଜାତିକ ଇତିହାସ ଗାନ କରିଥାନ୍ତି । ଡମ୍ ଗୋଷ୍ଠୀରେ ପ୍ରଜାତିକ ଭାଟ ବିରଥିଆ ଭାବରେ ପରିଚିତ । ଶୁଦ୍ଧକ୍ରିୟା ପରେ ଯେକୌଣସି ଦିନ ଆସି ଦୁଆର ମୁହଁରେ ଡମ୍ବୁରୁ ବାଦନ କରିଥାଏ । ବିରଥିଆଙ୍କୁ ଡମମାନେ ବଡ ଭାଇର ମାନ୍ୟତା ଦେଇଥାନ୍ତି । କେବଳ ମୃତ୍ୟୁରେ ନୁହେଁ, ଜନ୍ମ ଓ ବିବାହପରେ ମଧ୍ୟ ଦାନ ଗ୍ରହଣ କରିବାକୁ ଆସିଥାନ୍ତି । ଏହା 'ଶୁକ୍ ଦାନ' ଭାବରେ ପରିଚିତ । ଏମାନେ ଡମ୍ବୁରୁ ବଜାଇ ଡମ୍ ବଂଶାବଳୀ ଗାଥା ଭାବରେ ପରିବେଷଣ କରିଥାନ୍ତି । ଡମ୍ ସମ୍ପ୍ରଦାୟ ବ୍ୟତୀତ ଅନ୍ୟ କୌଣସି ଗୋଷ୍ଠୀର ସଦସ୍ୟଙ୍କ ପାଖରେ ଏହି ବାଦ୍ୟବାଦନ କରିନଥାନ୍ତି । ସେହିପରି, ଅନ୍ୟ ଗୋଷ୍ଠୀରେ ଖାଦ୍ୟ ମଧ୍ୟ ଗ୍ରହଣ କରିନଥାନ୍ତି । ବିରଥିଆ **ଅନୁରୂପ ପ୍ରତିନିଧି ସାନ୍ତାଳ ଗୋଷ୍ଠୀରେ 'ପଟକର' ଭାବରେ ପରିଚିତ ।**

ଡମ ଗୋଷ୍ଠୀ ପରି ଗଣ୍ଡ ଓ ଭତରା ଗୋଷ୍ଠୀରେ ପରଘନିଆ, ଗଡଡ ଗୋଷ୍ଠୀରେ ଘୋଗିଆ, କନ୍ଧମାନଙ୍କ ମରାଳ ଏହି ପ୍ରଜାତିକ ଭାଟର ଭୂମିକା ତୁଲାଇଥାନ୍ତି । ତେବେ, ଏହି ସ୍ୱତନ୍ତ୍ର ପ୍ରଜାତିକ ବଂଶାବଳୀ ପରିବେଷଣ ବ୍ୟତୀତ ଭୁଞ୍ଜିଆ, କୁଟିଆ କନ୍ଧ, ପହରିଆ, ପରଜା ଆଦି ସମସ୍ତ ପ୍ରଜାତିକ ଗୋଷ୍ଠୀରେ ଜାନୀ, ପୂଜାରୀ, ଦିଶାରିମାନେ ସେମାନଙ୍କ ସୃଷ୍ଟି ମିଥ୍ ବା ଜନମପୁରାଣ ପରିବେଷଣ କରିଥାନ୍ତି ଯାହା ଗୋଭାଉତରା ଭାବରେ ପରିଚିତ । ନିଜ ଗୋଷ୍ଠୀ ପରିଚିତି ବଜାୟ ରଖିବା ପାଇଁ ଏହି ନିଜ ଗୋଷ୍ଠୀର ଆଦିପୁରୁଷଙ୍କ ସହିତ ଅଲୌକିକ ଗୌରବ, ସଂଘର୍ଷର କାହାଣୀ ବ୍ୟାଖ୍ୟା କରିଥାନ୍ତି । ସେହିପରି, ସାନ୍ତାଳ ଗୋଷ୍ଠୀରେ 'ପଟୁଆ' ପଟ୍ଟଚିତ୍ର ଆଣି

ସାନ୍ତାଳ ଗୋଷ୍ଠୀର ସୃଷ୍ଟି ମିଥ୍ 'ଜମସିମ୍ ବିନତି'[7] ଜମସିମ୍ ଆୟୋଜନରେ ପରିବେଷଣ କରିଥାନ୍ତି ।

ଗାଦବା ଗୋଷ୍ଠୀରେ ପ୍ରଜାତିକ ପ୍ରତିନିଧି ଭାବରେ ଚରୁଭାଇଙ୍କ ଭୂମିକା ଏଠାରେ ଉଲ୍ଲେଖନୀୟ । ସାଧାରଣତଃ ପିଲାଜନ୍ମ, ବିବାହ, ଦଶା ବା ମୃତକର୍ମ, ଓ ନୂଆଖାଇ ସମୟରେ ପ୍ରସ୍ତୁତ ଓ ଦେବୀଦେବତାଙ୍କୁ ଅର୍ପିତ ଅନ୍ନକୁ ଏହିସବୁ ଗୋଷ୍ଠୀରେ ଚରୁ ଭାବରେ ଗ୍ରହଣ କରାଯାଏ । ସନ୍ତାନ ଜନ୍ମ ହେବା ପରେ ପ୍ରସୂତୀ ତଥା ସମ୍ପୃକ୍ତ ପରିବାର ଅଶୌଚ ହୋଇଥାନ୍ତି ବୋଲି ଧରାଯାଏ । ଏଗାର ଦିନ ପରେ ସେ ଶୁଦ୍ଧସ୍ନାନ କରି ନୂଆ ଆଟିକାରେ ଚରୁ ରାନ୍ଧି ପିତୃପୁରୁଷ ଓ ଦେବତାଙ୍କୁ ପୂଜା କରେ । ତା'ପରେ ତାକୁ ପ୍ରସବ କରାଇଥିବା ଧାଇ ଏବଂ ଛୁଆକୁ ପ୍ରଥମେ ଧରିଥିବା ସ୍ତ୍ରୀଲୋକଙ୍କୁ ସେ ଚରୁ ଖୁଆଏ । ସେହିପରି, ବିବାହ ପରେ ଆଦିବାସୀ କନ୍ୟାଟି ନୂତନ ଭାବେ ଛଣ-ଛପର ହୋଇଥିବା ଏକ ରନ୍ଧା ଘରେ ଚରୁ ରାନ୍ଧେ । ପିତୃପିତା, ଦେବୀଦେବତାଙ୍କୁ ଅର୍ପଣ କରିବା ପରେ ନିଜ ସ୍ୱାମୀକୁ ସେହି ଚରୁ ଦିଏ ଏବଂ ସ୍ୱାମୀ ମଧ୍ୟ ନିବବିବାହିତା ସ୍ତ୍ରୀଙ୍କୁ ଏହି ଚରୁ ଖୁଆଇବା ଦେଖାଯାଏ ।

ବିବାହ ପରି ଦଶା ବା ମୃତକର୍ମରେ ବି ପିତା ଚରୁ ପ୍ରସ୍ତୁତ ହୋଇଥାଏ । ମୃତ୍ୟୁ ହେଲେ ତିନି ଦିନ କିମ୍ବା ଦଶ ଦିନରେ ବି ମୃତ ପରିବାର ଜ୍ଞାତିପୁରୁଷ ଲୋକମାନେ ଚରୁ ରାନ୍ଧନ୍ତି । ପ୍ରଥମେ ମୃତ ବ୍ୟକ୍ତିର ଡୁମା ପାଇଁ ଏବଂ ପୂର୍ବରୁ ମୃତ୍ୟୁବରଣ କରିଥିବା ଡୁମାମାନଙ୍କ ପାଇଁ ସରଗି ଚକନିରେ ନେଇ ବେଜରନାରେ ଦନି ଦିଅନ୍ତି । ଚରୁ ସହିତ ବିଡି, ଗୁଡାଖୁ, ନାସ, ଧୂଆଁପତ୍ର ଅଭ୍ୟାସ ଥିଲେ ସେସବୁ ଜିନିଷ ଦିଆଯାଏ । ଏହି ଚରୁକୁ ଏକାଠି କୁଟୁମ୍ବ ଲୋକେ ଖାଆନ୍ତି । ଏହି ଚରୁରେ କଲରା ବା ପିତା ଫଳ, ଓ ମାଛ (ଆମିଷ) ବି ପଡିଥାଏ ।

ନୂଆଖାଇରେ ମଧ୍ୟ ଚରୁ ପ୍ରସ୍ତୁତ କରାଯାଏ । ନୂଆଖାଇ ଦିନ ପ୍ରତି ଘରେ ସ୍ତ୍ରୀଲୋକମାନେ ନୂଆ ଆଟିକାରେ ଚରୁ ରାନ୍ଧି ପିତୃ ଓ ଦେବୀଦେବତାଙ୍କୁ ସମର୍ପଣ ପରେ ସରଗି ପତ୍ର ଚିପିଲିରେ ଚରୁ, ମଦ ଏବଂ କୁକୁଡା ମାଂସ ଖାଇ ନୂଆଖାଇ ପାଳନ କରିଥାନ୍ତି । ଏହା ବ୍ୟତୀତ, ଆଦିବାସୀ ରୟତମାନେ କାର୍ତ୍ତିକ ମାସରେ ସର୍ବ ପ୍ରଥମେ କ୍ଷେତରେ ଧାନ କାଟିବା ଦିନ ପରିବାରର ସମସ୍ତେ ଏକାଠି ହୋଇ ମାଟିମାଆ (ପୃଥିବୀ)କୁ ପୂଜା କରି ଅନୁମତି ମାଗନ୍ତି । ପାରା ଓ କୁକୁଡା ବଳି ଦେଇ ଉକ୍ତ ବଳି ଭୋଗକୁ ସେଇ ସ୍ଥାନରେ ହିଁ ରୋଷେଇ କରନ୍ତି ଏହା ଚରୁ ଯାତ୍ରା ଭାବରେ ପରିଚିତ । କେତେକ ସ୍ଥାନରେ ଧାନ କଟା ତଥା ଖଳା ଯାତ୍ରା ସରିବା ପରେ ମଧ୍ୟ ଚରୁ ଦିଆଯାଏ । ଗାଦବା ଗୋଷ୍ଠୀରେ ସ୍ୱତନ୍ତ୍ର ଭାବରେ ଚରୁଭାଇ ଥାଆନ୍ତି ଏହି ଚରୁଭାଇ ନିର୍ବାଚନ ପାରମ୍ପରିକ ତଥା ପିଢିଧରି ପିଢି ଏହା ସ୍ଥିରୀକୃତ । ଚରୁଭାଇ ନଆସିଲେ ଏହି ଗୋଷ୍ଠୀରେ କୌଣସି ରୀତିନୀତି ପାଳିତ ହେବା ସମ୍ଭବ ନୁହେଁ, କାରଣ ସେମାନେ ହିଁ ସମ୍ପୃକ୍ତ ପରିବାର ପାଇଁ ଚରୁ ରାନ୍ଧିବା କାମ କରିପାରିଥାନ୍ତି ।

**ଖ) ଅନୁଷ୍ଠାନିକ ପ୍ରତିନିଧି :** ଆଦିବାସ ଓ ମିତାନ୍ ଗୋଷ୍ଠୀ ବସବାସ କରୁଥିବା ଅଞ୍ଚଳରେ ପଁଚ, ପାଲି, ଭାତ ଆଦି ସାମାଜିକ ଅନୁଷ୍ଠାନର ପ୍ରତିନିଧିତ୍ୱ ମଧ୍ୟ ଅନେକ ଗୁରୁତ୍ୱ ରଖେ । ପୂଜାରୀ, ଗଣା, ଗୌନ୍ତିଆ, ଦିଶାରୀ, ତଥା କିଛି ସିଆନ୍ ଲୋକଙ୍କୁ ନେଇ ପଁଚ ଗଠିତ ହୋଇଥାଏ । ସେହିପରି ସହାବସ୍ଥିତ ଏକାଧିକ ଗ୍ରାମ ମିଶି ପାଲି ଗ୍ରାମ ଭାବରେ ପରିଚିତ । ଏହି ପାଲିଗ୍ରାମଗୁଡିକ ବିଭିନ୍ନ ପୂଜାପର୍ବରେ ଭାଗ ନେବା ସହ ପାଳନ ଓ ପରିବେଷଣରେ ସହଯୋଗ କରିବା ଦେଖାଯାଏ । ପଁଚ, ପାଲି ଭଳି ଭାତ ଯାହା ଦୁଇ ତିନୋଟି ବଂଶର ସଦସ୍ୟ ମିଶି ଗଠନ କରିଥାନ୍ତି ତାହା ମଧ୍ୟ ଜନ୍ମ, ମୃତ୍ୟୁ, ବିବାହ ଆଦି ରୀତିନୀତିରେ ଅତି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଥାଏ । ପଁଚ, ପାଲି ଆଦିରେ ବିଭିନ୍ନ ଜାତି ତଥା ଗୋଷ୍ଠୀର ଲୋକ ସଦସ୍ୟ ରହିଥିବାବେଳେ ଭାତରେ କୌଣସି ଗୋଟିଏ ଗୋଷ୍ଠୀ ବା ଜାତିର ସଦସ୍ୟ ହିଁ ଥାନ୍ତି । ଅତଏବ, ଏହାକୁ 'ଆନ୍ତର୍ଗୋଷ୍ଠୀ ଅନୁଷ୍ଠାନ (esoteric group)'[8] ଭାବରେ ଗ୍ରହଣ କରାଯାଇପାରେ (Jansen 1959) ।

ବ୍ୟକ୍ତି ତଥା ସମାଜର ସୁରକ୍ଷା ଓ ସଂହତି ସ୍ଥାପନ କ୍ଷେତ୍ରରେ ସାମାଜିକ ସଂଗଠନ ଓ ନିୟନ୍ତ୍ରଣ ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସମାଜ ମୁଖ୍ୟ ରହିଥାନ୍ତି । ସେ ସାମୂହିକ କର୍ମ ଯଥା ଧର୍ମାଚାର, ଧର୍ମାନୁଷ୍ଠାନ ପରିଚାଳନା ଆର୍ଥିକ ଉତ୍ପାଦନ ଓ ବଣ୍ଟନ, ସାମାଜିକ ନିୟନ୍ତ୍ରଣ ପାଇଁ ନ୍ୟାୟନିଶାପ, ମଧ୍ୟସ୍ଥତା ଓ ସାମୂହିକ ତଥା ବ୍ୟକ୍ତିଗତ ସମସ୍ୟା ଆଦିର ସମାଧାନ କରନ୍ତି । ସାମାଜିକ ତଥା ସାମୂହିକ କର୍ମ ସମ୍ପାଦନ ବେଳେ ସେ ବିଶିଷ୍ଟ ବ୍ୟକ୍ତି ଅନ୍ୟ ସମୟରେ ସେ ସମାଜରେ ଜଣେ ସାଧାରଣ ବ୍ୟକ୍ତି ଭାବରେ ହିଁ ପରିଗଣିତ ହୋଇଥାନ୍ତି । ଏହି ସାମାଜିକ ପ୍ରତିନିଧିମାନେ ବଂଶାନୁକ୍ରମିକ ହୋଇପାରନ୍ତି ବା ନହୋଇପାରନ୍ତି । ପଶ୍ଚିମ ଓଡିଶାର ସାମାଜିକ ନିୟନ୍ତ୍ରଣର ସ୍ୱରୂପକୁ ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ ଗ୍ରାମ ଶାସନରେ ଗ୍ରାମୀଣ ମୁଖ୍ୟ ବଂଶାନୁକ୍ରମିକ ରହନ୍ତି । ଏହି ଅଞ୍ଚଳର ଗ୍ରାମ-ମୁଖ୍ୟ ରୂପେ ଆଦିବାସୀ ସମ୍ପ୍ରଦାୟର ଗଣ୍ଡ, କନ୍ଧ, ଭୁଞ୍ଜିଆ ଶବର, ଶହରା, ବିଞ୍ଝାଲ, ଦଲ, ଧରୁଆ, ଭତରା, ପରଜା ଆଦିଙ୍କୁ ଦେଖିବାକୁ ମିଳେ । ଏହା ବ୍ୟତୀତ ମାଳୀ, ତେଲି, ଗଉଡ, ପାଇକ, ବ୍ରାହ୍ମଣ, କରଣ, କୁଲତା ଆଦି ଗ୍ରାମୀଣ ମୁଖ୍ୟ ଗଉନ୍ତିଆ ଆଦି ରହିଲେ ସୁଦ୍ଧା ସମାନ୍ତରାଳ ଭାବେ ଆଦିବାସୀମାନେ ହିଁ ଗ୍ରାମୀଣ ମୁଖ୍ୟ ଭୂମିକା ତୁଲାଇଥାନ୍ତି । ଗ୍ରାମର ଶାସନ ମୁଖ୍ୟ ବ୍ରାହ୍ମଣ କିମ୍ବା କୁଲତା ଗଉନ୍ତିଆ ଥିଲେ ମଧ୍ୟ ସମୂହ କାର୍ଯ୍ୟ ପାଇଁ ଗ୍ରାମ ସଂଗଠନ ପଁଚରେ ଗଣ୍ଡ ଝାଙ୍କର ବା କନ୍ଧ ଜାନୀ (priest) ତଥା ସେମାନଙ୍କ ସହିତ ଗଣ୍ଡ ଦିଆରୀ ବା କନ୍ଧ ଦିଶାରୀ (shaman) ରହିଥାନ୍ତି । ଏମାନଙ୍କ ସହିତ ନରିହା (ଗଉଡ), ଖବରିଆ (ଡମ), ଗୁନିଆ ବା ବଇଦ, ଗଣା ବା ଗାଁ ଚଉକିଦାର ଆଦି ଗ୍ରାମରୁ ଅର୍ଥ ପାଇ ସମୂହ କାମ ପାଇଁ ନିଯୁକ୍ତ ହୋଇଥାନ୍ତି । ଏହି ଗ୍ରାମ ଶାସନ ପଁଚରେ କିଛି ସିଆନ ଲୋକଙ୍କୁ ବି ଅଗ୍ରାଧିକାର ଦିଆଯାଏ । ଗ୍ରାମର ସର୍ବସାଧାରଣଙ୍କ ଶୁଭାଶୁଭ କାର୍ଯ୍ୟବେଳେ ଗଣାବାଜା ବାଜି ଥାଏ । ଗ୍ରାମର ସର୍ବସାଧାରଣ ସ୍ଥାନରେ ଥିବା ଦେବୀଗୁଡିରେ ଜାତି, ଗୋଷ୍ଠୀ ଭେଦରେ ଗ୍ରାମର ସମସ୍ତ ସଦସ୍ୟଙ୍କ ସମାନ ଅଧିକାର ଥାଏ । ଗ୍ରାମର ଶାସନ ବା ପଁଚରେ ଗ୍ରାମର ସମସ୍ତ ବ୍ୟକ୍ତି ପଁଚରେ ନିର୍ଦ୍ଧାରଣ କ୍ରମେ ଆର୍ଥିକ ଅନୁସାରେ ଚାନ୍ଦାଭେଦା ଦିଅନ୍ତି । ଯାହା ଚାନ୍ଦା ସଂଗ୍ରହ ହୁଏ ସେହି ଅର୍ଥରୁ ଗ୍ରାମର ଦେବତା ଗୁଡି, ଓ ଯାତରାପରବ ପାଇଁ ଖର୍ଚ୍ଚ ହୁଏ ।

ଗୋଟିଏ ଗାଆଁ ବା ସାହିରେ ଆଦିବାସୀ ତଥା ମିତାନ୍ ଗୋଷ୍ଠୀର ବିଭିନ୍ନ ବଂଶର ସଦସ୍ୟ ବସବାସ କରିଥାନ୍ତି । ଗ୍ରାମ ତଥା ସ୍ଥାନୀୟ ଅଞ୍ଚଳରେ ପାଳନ କରାଯାଉଥିବା ସାମାଜିକ ରୀତିନୀତି ବ୍ୟତୀତ ପରିବାରରେ, ବଂଶର ସମସ୍ତ ସଦସ୍ୟଙ୍କ ମଧ୍ୟରେ ମଧ୍ୟ କେତେକ ରୀତିନୀତି ପାଳନ କରାଯାଏ । ଜନ୍ମ-ମୃତ୍ୟୁ-ବିବାହ ଆଦି କାର୍ଯ୍ୟରେ ପାରିବାରିକ ସଦସ୍ୟ ବ୍ୟତୀତ ଅନ୍ୟ ବଂଶର ସଦସ୍ୟ ବା ବନ୍ଧୁ ଲୋକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅତଏବ, ଦୁଇ ତିନୋଟି ବଂଶ ମିଶି ଏକ 'ଭାତ' ତିଆରି କରିଥାନ୍ତି । ଏହି ଗୋଷ୍ଠୀ ଅବଧାରଣାକୁ 'ସାମାଜିକତା (communitas)'[9] ଭାବରେ ଗ୍ରହଣ କରାଯାଏ । ଜନ୍ମମୃତ୍ୟୁ

ବିବାହ ଆଦି ସାମାଜିକ କାର୍ଯ୍ୟରେ ହିଁ ଏହି 'ଭାତ' କାର୍ଯ୍ୟ କରିଥାଏ । ତେବେ, ଅନ୍ୟ ବଂଶର ସଦସ୍ୟ ଏସବୁ ରୀତିନୀତିରେ ଯୋଗ ଦେବାରେ ବାଧା ନଥାଏ । ସାମାଜିକ କ୍ରିୟାକର୍ମ ଶୃଙ୍ଖଳିତ ପରିଚାଳନା ପାଇଁ ଏହି ସାମାଜିକ ସଂରଚନା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ସେହିଭଳି ବନ୍ଧୁ-କୁଟୁମ୍ବଙ୍କ ଉପସ୍ଥିତି ବିଭିନ୍ନ ସାମାଜିକ ରୀତିନୀତିର ଅନିବାର୍ଯ୍ୟ ମନେହୁଏ । ବନ୍ଧୁ ବଂଶ ବା ଯେଉଁ ବଂଶ ସହିତ ବିବାହ ତଥା ଝିଅ ଦିଆନିଆ ହୋଇଥାଏ ତାହା ସାଧାରଣତଃ ବନ୍ଧୁ ଓ ସ୍ୱ-ବଂଶୀୟ ସଦସ୍ୟ କୁଟୁମ ଲୋକ ଭାବରେ ପରିଚିତ। ଏମାନଙ୍କ ଉପସ୍ଥିତି ବିନା ଜନ୍ମ-ମୃତ୍ୟୁ-ବିବାହ ସମ୍ପର୍କିତ କୌଣସି କାର୍ଯ୍ୟ ହୋଇପାରେ ନାହିଁ । ପ୍ରାୟ  ଗୋଷ୍ଠୀରେ ବନ୍ଧୁ-କୁଟୁମ୍ବ ନଆସିଲେ ଶବ ଉଠିବା କି ଶବଯାତ୍ରା ହୋଇପାରିନଥାଏ । କାରଣ, କୁଟୁମ୍ବ ଲୋକ ଆସି ଶବ ଛୁଇଁଲେ ହିଁ ଶବ ଉଠିବାର ବିଧି ଅଛି ଏହା "କୁଟୁମ୍ ଛୁଆଁ" ଭାବରେ ପରିଚିତ । ଏହି ବନ୍ଧୁ-କୁଟୁମ୍ବ ମରାଖଟ ମଧ୍ୟ ସଜାଡି ଥାଆନ୍ତି । ଏହା ବ୍ୟତୀତ, ଏମାନେ ପରବର୍ତ୍ତୀ ରୀତିନୀତି ପାଳନ– ଶୁଦ୍ଧିକ୍ରିୟା, ଦଶାହ ଆଦି କରିବାରେ ମଧ୍ୟ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ସେହିପରି, ଜନ୍ମ ଓ ବିବାହ ସମ୍ପର୍କିତ ରୀତିନୀତି ଆଦିର ପାଳନ ସମୟରେ ମଧ୍ୟ ଏହି ବନ୍ଧୁ-କୁଟୁମ୍ବଙ୍କ ଉପସ୍ଥିତି ଆବଶ୍ୟକ ହୋଇଥାଏ ।

ଆଦିବାସୀ ତଥା ମିତାନ୍ ଗୋଷ୍ଠୀରେ ସାମାଜିକ ସାଂସ୍କୃତିକ ପ୍ରତିନିଧି ଓ ଅନୁଷ୍ଠାନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ସେମାନଙ୍କ ଦାୟିତ୍ୱ ନିର୍ବାହ କରିଥାନ୍ତି । ଏମାନଙ୍କ ଉପସ୍ଥିତି ବିନା ସମ୍ପୃକ୍ତ ସାମାଜିକ ଗୋଷ୍ଠୀରେ କୌଣସି ସାମାଜିକ ସାଂସ୍କୃତିକ କାର୍ଯ୍ୟକ୍ରମ, ରୀତିନୀତି, ପର୍ବପର୍ବାଣି ଆୟୋଜନ ହେବା ସମ୍ଭବ ନୁହେଁ । ଏମାନଙ୍କ ଉପସ୍ଥିତି ସମ୍ପୃକ୍ତ କ୍ରିୟାକର୍ମକୁ ଶୃଙ୍ଖଳତାର ସହିତ ପରିବେଷଣ କରିବାରେ ସହାୟକ ହୋଇଥାଏ । ଏମାନଙ୍କ ଏହି ଭୂମିକା ପାଇଁ ସମ୍ପୃକ୍ତ ଗୋଷ୍ଠୀରେ ସହମତି ଥାଏ ତଥା ସମ୍ପୃକ୍ତ ଗୋଷ୍ଠୀ ସଦସ୍ୟଙ୍କ ଅନୁମତିରେ ଏହା ସେମାନେ ପରିବେଷଣ କରିଥାନ୍ତି । ଏମାନେ ସମ୍ପୃକ୍ତ ଗୋଷ୍ଠୀ ତଥା ସମାଜର ସାଂସ୍କୃତିକ ରୂପରେଖ (cultural profiling)[10], ଗୋଷ୍ଠୀ ପରିଚିତି (ethnic identity)[11] ଆଦିକୁ ବଜାୟ ରଖିବାରେ ପ୍ରମୁଖ ଭୂମିକା ଗ୍ରହଣ କରିବା ସହ ଗ୍ରାମ ତଥା ଗୋଷ୍ଠୀର ସାମୂହିକତା ଓ 'ସମନ୍ୱୟତା (collectivities)[12]' ବଜାୟ ରଖିବାରେ ସହାୟକ ହୋଇଥାନ୍ତି ।

---

1. "ଭୁଞ୍ଜିଏକର ଦେବତା / ଡମେକର ସଲତା ।

କନ୍ଧର ଯେ ଧରନୀ, ଗଉରର ପାନି / କୁମାରର ଦିଆ, ଲୋହରାର ଖଣା ।"

"ଡମର ବାଏନ, ଗଉରର ପାଏନ / ପୂଜାରୀର ଧୂପଧୁନା ଗଣାର ବାଜନା

ଲୋହରାର ଶିକଲା ଖାଣା, କୁମାରର କଣି, ଭାଣା ।"

2. ଏଠାରେ ଉଲ୍ଲେଖନୀୟ ଯେ, କେତେକ 'ବୈଷୟିକ ପରମ୍ପରା (technological tradition)'ରେ ଏହି 'ପରମ୍ପରା ବାହକ' ବା 'ସିଆନ୍'ଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏମାନଙ୍କ ବିନା ଏହି ନିର୍ଦ୍ଦିଷ୍ଟ ପରମ୍ପରାର ସମ୍ପ୍ରସାରଣ କେବେ ବି ସମ୍ଭବ ହୋଇନଥାଏ । ଉଦାହରଣ ସ୍ୱରୂପ, ବାଦ୍ୟ ବାୟନ ଏକ ବିଶେଷ କଳା । ସମସ୍ତ ବାଦ୍ୟକାର ଯଦିଓ ଏହି ବାୟନ କଳା ପାରମ୍ପରିକ ଭାବରେ ଶିକ୍ଷା କରିଥାନ୍ତି ତଥାପି ସେମାନଙ୍କ ଭିତରେ 'ବିଶେଷ ପରିବେଷଣକାରୀ (master performer)' ଥାଆନ୍ତି । ଏମାନଙ୍କ ପରିବେଷଣ ଅନ୍ୟମାନଙ୍କ ପରିବେଷଣ ଅପେକ୍ଷା ଉଚ୍ଚ ପ୍ରଶଂସିତ ହେବା ସହିତ ଅନ୍ୟମାନଙ୍କୁ ଏମାନେ ସେହି ପାରମ୍ପରିକ ଜ୍ଞାନ ଶିକ୍ଷା ଦେବା ମଧ୍ୟ ଦେଖାଯାଇଥାଏ । ଏହିପରି ନୃତ୍ୟ, ଗୀତ,  ପାରମ୍ପରିକ ବୟନ କଳା, ହସ୍ତଶିଳ୍ପ, ଦେବଦେବୀଙ୍କ ରୀତିନୀତି ପ୍ରଭୃତିରେ ପାରମ୍ପରିକ ବିଶେଷଜ୍ଞ 'ବେହେରାନ'ଙ୍କ ଭୂମିକାକୁ ଉପେକ୍ଷା କରାଯାଇନପାରେ ।

3. ଢୋଲ, ଟମକ, ନାଗରା, ଢାପ୍ ପ୍ରଭୃତି ବାଦ୍ୟଯନ୍ତ୍ର ହାଡି, ବାଉରି, ପାଣ, ଗଣା ପ୍ରଭୃତି ଗୋଷ୍ଠୀର ଲୋକ ନିର୍ମାଣ କରିଥାନ୍ତି । ସେହିପରି, ଆଦିବାସୀମାନେ ମଧ୍ୟ ନିଜ ନିଜ ବାଦ୍ୟ ଯନ୍ତ୍ର ନିଜେ ନିର୍ମାଣ କରିଥାନ୍ତି । ଉଦାହରଣ ସ୍ୱରୂପ, ପରଜାମାନଙ୍କ ଡୁଙ୍ଗଡୁଙ୍ଗା, ଦୁରୁଆମାନଙ୍କ କିରକିସା, କନ୍ଧମାନଙ୍କ ଢାପ, ସଉରାଙ୍କ ରେଗରେଗା, ଗଣ୍ଡ ଓ ସାନ୍ତାଳମାନଙ୍କ ମାଦଳ ସେମାନଙ୍କ ଗୋଷ୍ଠୀ ସଦସ୍ୟଙ୍କଦ୍ୱାରା ହିଁ ତିଆରି ହୋଇଥାଏ । ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଆଦିବାସୀମାନଙ୍କ ବାଜା ଦେଶିଆ ବାଜା ବା ଦେଶିଆ ବାଇଦ ଭାବରେ ବି ପରିଚିତ । ଆଦିବାସୀ ଗୋଷ୍ଠୀରେ ବାଦ୍ୟଯନ୍ତ୍ର ମଧ୍ୟରେ ଡୁଙ୍ଗଡୁଙ୍ଗା (କନ୍ଧ, ପରଜା, ଗାଦବା), ରାମଗୁଟା (ଗାଦବା, ପରଜା, ଓମାନତ୍ୟ), ଧୁଡକି (ସଉରା), ମୁଜରା (ଭତ୍ରା), ଗୁନୁଂକୁ (ବଣ୍ଡା), ଶିଂଗା (ବଣ୍ଡା, ଡିଡାୟୀ, କନ୍ଧ, ଦୁରୁଆ, ସଉରା), ବାଇକୁଣ୍ଡଳ (ଲୋଧା), ଚାଙ୍ଗୁ (ବାଥୁଡି, ଜୁଆଙ୍ଗ, ପାହାଡି ଭୂୟାଁ) ଆଦି ଉଲ୍ଲେଖନୀୟ ତଥା ଜୁଆଙ୍ଗମାନେ ସେମାନଙ୍କର ମଜାଙ୍ଗରେ ଚାଙ୍ଗୁକୁ ରଖି କେତେକ ପର୍ବପର୍ବାଣି ସମୟରେ ପୂଜା କରିବା ମଧ୍ୟ ଦେଖିବାକୁ ମିଳେ । ସେହିପରି, କିଛି ବାଦ୍ୟଯନ୍ତ୍ର ଅଞ୍ଚଳ ତଥା ଗୋଷ୍ଠୀ ଭେଦରେ ଅନ୍ୟରୂପ ତଥା ଭିନ୍ନରୂପ ମଧ୍ୟ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, ଗଣ ଢୋଲ (ଡୁମରି), ବଣ୍ଡା ଢୋଲ (ଟୁଡୁଂ), ଦୁରୁଆ ଢୋଲ (ଢୋଲା), ସୁଉରା ଢୋଲ (ତୁଡୁଂ) ଆଦି କେବଳ ବିଭିନ୍ନ ନାମ ପାଇଁ ନୁହେଁ ଆକାର ଓ ପ୍ରକାର ଦୃଷ୍ଟିରୁ ମଧ୍ୟ ନିଜନିଜର ସ୍ୱତନ୍ତ୍ରତା ରକ୍ଷା କରେ । ସେହିପରି, କନ୍ଧ, ସଉରା, ଦୁରୁଆ, ସାନ୍ତାଳମାନଙ୍କ ବଂଶୀଗୁଡିକ ମଧ୍ୟ ସେମାନଙ୍କ ସ୍ୱତନ୍ତ୍ରତା ରକ୍ଷା କରିଥାଏ ।

4. ଗଣା ବାଜାରେ ମହୁରୀ, ଢୋଲ, ନିସାନ୍, ତାସା ବା ତିରିବିଡି ଆଦି ବାଦ୍ୟଯନ୍ତ୍ର ବାଦନ କରାଯାଇଥାଏ । ଏହି ବାଦ୍ୟଯନ୍ତ୍ର ସବୁ ଗୋଷ୍ଠୀ ସଦସ୍ୟଙ୍କଦ୍ୱାରା ହିଁ ପ୍ରସ୍ତୁତ ହୋଇଥାଏ । ଯେଉଁ ନିସାନରେ ଶିଂଘ ଭଳି ଲମ୍ବା ଲୁହାର ଆକୃତି ଥାଏ ତାହାକୁ ଶିଂଘବାଜା ଓ ଯେଉଁଠି ଏହି ଆକୃତି ନଥାଏ ତାହାକୁ ମୁରରି ବାଜା କୁହାଯାଏ । ମୁରରି ବାଜା କେତେକ ଅଞ୍ଚଳରେ ଢୋଲ ବାଜା, ଢାପ୍ ବାଜା, ଲୁହୁଟି ବାଜା ବା ଚିମକିଡି ବାଜା ଭାବରେ ମଧ୍ୟ ପରିଚିତ । ମୁରରି ବାଜାରେ ଢୋଲ ବ୍ୟବହାର ହେଲେ ଢାପ ବ୍ୟବହାର ହୋଇ ନଥାଏ । ବେଳେବେଳେ ଢାପ, ଡୋଲ ସହିତ ମହୁରୀ ନିସାନ ଆଉ ଛୋଟ

ନିସାନ ବା ଟିମକିଡି ବ୍ୟବହାର ମଧ୍ଯ କରାଯାଏ ଯାହାକୁ ଟିମକିଡି ବା ଲୁହୁଟି ବାଜା କୁହାଯାଏ ।

5. ପାରମ୍ପରିକ ବାଦ୍ୟ ହୋଇଥିଲେ ମଧ୍ଯ ଏଥିରେ ଶୃଙ୍ଖଳା ତଥା ବିଭିନ୍ନ ତାଳ ତଥା ପାର ଦେଖିବାକୁ ମିଳେ । ପରିବେଶ ଓ ଆବଶ୍ୟକତା ଅନୁସାରେ ବାଜାର ପରିବେଷଣକୁ ନେଇ ବାଦନ ଶୈଳୀକୁ ବିହାପାର, ଦେବତା ପାର, ନାଚନୀ ପାର, ମରହା ପାର ଆଦି କୁହାଯାଏ । ବିବାହରେ ମଧ୍ଯ ନାନା ଶୈଳୀରେ ବାଜା ବାଜିଥାଏ ଯେମିତି, ନାଚନୀ ପାର, ଗନସେନ ପାର, ଦୁରଲା ନଚା ପାର, ବାଟ ଚହଲେନ ପାର, ମୁହୁଁଜୁଆ ପାର, ପରଘେନ ପାର, ଡାଲ ବହଲେନ ପାର, ଚଉଲ ଟିକେନ ପାର, ବିନକି ମରା ପାର, ଲଗନ ପାର ଇତ୍ୟାଦି । ସେହିଭଳି ମରା ପାରକୁ 'ମରହା ନିଶାନ' କୁହାଯାଇଥାଏ । ଏହି ସମୟରେ କେବଳ ଗୋଟିଏ ପାର ବା ଗୋଟି ଶୈଳୀରେ ହିଁ ବାଜିଥାଏ । ଗୋଟିଏ ପାର ବିଭିନ୍ନ ସ୍ତର ମଧ୍ୟରେ ବାଦନ କରାଯାଇଥାଏ ଯେପରି– ଚଘେନ, ଧାର, ଉତରେନ, ମୁଡେନ, ଛିଡେନ, ଉଡାନ୍, ବଢେନ୍, ଲସ, କୁଟି, ମାଠି, ବସେନ୍, ଠୁମକେଲ । ବାଦ୍ୟ ଆରମ୍ଭରେ ଗୋଟିଏ ପାର ବାଦ୍ୟକୁ ଉଠେଇବା ପଦ୍ଧତିକୁ 'ଚଘେନ' କୁହାଯାଏ । ଏକ ନିର୍ଦ୍ଦିଷ୍ଟ ପାର ବାଜିବା ପୂର୍ବରୁ ବିଭିନ୍ନ ବାଦ୍ୟଯନ୍ତ୍ର ଗୋଟି ଗୋଟି କରି ବାଜି ଉଠନ୍ତି ଏବଂ ଗୋଟିଏ ରାସ୍ତା ବା ଦିଶାକୁ ଆସିଲେ ଯେଉଁ ଧ୍ୱନି ସୃଷ୍ଟି ହୁଏ ତାକୁ 'ଚଘେନ' କୁହାଯାଏ । ଆରମ୍ଭ ପରେପରେ ମହୁରୀ, ନିଶାନ, ତାସା ଓ ଢୋଲର ଧ୍ୱନି ଏକ ନିର୍ଦ୍ଦିଷ୍ଟ ପାରକୁ ଛୁଇଁବାକୁ 'ଧାର' କୁହାଯାଏ ବା ବଜା ଧାର ଧରିଲା କୁହାଯାଏ । ସେହିପରି, କାଟେନ କହିଲେ, ଗୋଟିଏ ପଦ ଗୀତ ଗାଇବା ପରେ ହିଁ ବାଦ୍ୟ ବାଜିଥାଏ । ଏଇ ଗୀତର ଧାରାକୁ ଲକ୍ଷ୍ୟ କରି ମହୁରୀ ସେଇ ଅନୁସାରେ ଆଗେଇଥାଏ । ଗୋଟିଏ ପଦର ଶେଷ ପଙ୍କ୍ତିରେ ମହୁରୀ ପହଞ୍ଚିଲେ ଢୋଲ, ବାଦ୍ୟର ଧାରାକୁ କାଟିଦେଇ ମହୁରୀ ପୁଣିଥରେ ଗୀତର ପ୍ରଥମ ପଙ୍କ୍ତିକୁ ଫେରିଥାଏ । ବାଦ୍ୟର ଏହି ହଠାତ୍ ପରିବର୍ତ୍ତନକୁ କାଟେନ୍ ଓ ପୁଣିଥରେ ପୂର୍ବାବସ୍ଥାକୁ ଫେରିବାକୁ 'ମୁଡେନ୍' କୁହାଯାଏ । ପାରର ଅନ୍ତିମ ଅବସ୍ଥା ଅବତରଣକୁ 'ଉତରେନ୍' ଓ ପରିସମାପ୍ତିକୁ 'ଛିଡେନ' କୁହାଯାଏ । ବେଳେବେଳ ନାଚନୀ ପାର ହେଉ କିମ୍ବା ଦେବତା ପାର କ୍ଷୀପ୍ର ଗତିରେ ବାଜେ, ଏହା 'ଉଡାନ' ଭାବରେ ପରିଚିତ । ସେହିପରି, ପାରରେ କାଟେନର ସଂଖ୍ୟା ବଢେଇବାକୁ 'ପାର ବଢେନ' କୁହାଯାଏ । ଧିମା ଗତିରେ ବାଦ୍ୟ ବାଦନକୁ କୁହାଯାଏ 'ଲସ' । ଅନୁରୂପ ଭାବରେ, କାଁଭାଁ ବାଦ୍ୟ ବଜାଇବାକୁ 'କୁଟି' ଓ ବାଦ୍ୟ ବାଦନ ସ୍ଥିର ରହିବା 'ମାଠି' ଭାବରେ ପରିଚିତ । ନୃତ୍ୟ ପରିବେଷଣ କ୍ଷେତ୍ରରେ ଅନେକ ସମୟରେ ନୃତ୍ୟର ଭଙ୍ଗୀ ପରିବର୍ତ୍ତିତ ହୋଇଥାଏ ଏହି ସ୍ଥିତିରେ ଢୋଲିଆ ମଧ୍ଯ ଢୋଲର ଚେମଠା ବା କାଠିକୁ ଯଥା ସ୍ଥାନରେ ବା ଚମଡାରେ ନବଜାଇ ଢୋଲର ସବା ଉପରେ ଅର୍ଥାତ୍ କାଠରେ ମୃଦୁ ଆଘାତ କରୁଥାଏ । ଏହି ଶୈଳୀକୁ କୁହାଯାଏ 'ବସେନ' । ଏହିଭଳି ନାଚନିପାର ହେଉଛି ଠୁମକେଇ ଯାହା ସାଧାରଣତଃ ଦେବତା ନାଚ କ୍ଷେତ୍ରରେ ବାଜିଥାଏ । ଏଠାରେ ଉଲ୍ଲେଖନୀୟ ଯେ, ଦେବୀଦେବତାଙ୍କ କ୍ଷେତ୍ରରେ ମଧ୍ଯ ଆବାହନୀ ପାର ବା ପତରି ଓଛେନ ପାର, ଭରନୀପାର, ବୋଏଲପାର ତଥା ବିଭିନ୍ନ ଦେବଦେବୀଙ୍କ ପାଇଁ ସ୍ୱତନ୍ତ୍ର ପାରରେ ବାଦନ କରାଯାଏ ।

6. ଆଗେ ବାଜା, ପଛେ ରଜା / ଆଗେ ବାଜା, ପଛେ ଦେବତା, ବି ।
ଆଗେ ବାଜା, ପଛେ ବିହା / ଆଗେ ବାଜାବାଜଣା, ପଛେ ଦେ'ସଲତା ।

7. ସାନ୍ତାଳ ଗୋଷ୍ଠୀରେ ବିଭିନ୍ନ ପ୍ରକାରର ବିନତି ଦେଖିବାକୁ ମିଳେ ଯଥା, ଜମସିମ ବିନତି(ବିଶେଷ ଭୋଜି ଆୟୋଜନରେ), ଛଟିୟର ବିନତି (ଜନ୍ମକାଳୀନ), ବାପଲା ବିନତି (ବିବାହକାଳୀନ), ଭାଣାନ ବିନତି (ଶ୍ରାଦ୍ଧକାଳୀନ), ପଟକର ବିନତି (ଶ୍ରାଦ୍ଧ ପରବର୍ତ୍ତୀସମୟର), କାରମ ବିନତି (କରମା ସମୟର) । ଏହି ବିନତିରେ ସମ୍ପୃକ୍ତ ପ୍ରତିନିଧିମାନେ ସାନ୍ତାଳ ଗୋଷ୍ଠୀର ସୃଷ୍ଟି ତଥା ଜନ୍ମ କାହାଣୀ ଓ ରୀତିନୀତି ସମ୍ପର୍କରେ ଆଖ୍ୟାନ ପରିବେଷଣ କରିଥାନ୍ତି ।

8. ଗୋଷ୍ଠୀର ଆନ୍ତଃଆଦାନପ୍ରଦାନକୁ ଜାନସେନ୍ (Jansen 1965) ତାଙ୍କ "The Esoteric-Exsoteric Factors in Folklore" ପ୍ରବନ୍ଧରେ ଗୁରୁତ୍ୱ ପ୍ରଦାନ କରନ୍ତି ଯାହା ଗୋଷ୍ଠୀଅଧ୍ୟୟନରେ ତଥା ସେମାନଙ୍କ ସାଂସ୍କୃତିକ ଦିଗକୁ ଅନୁଶୀଳନ କରିବାରେ ମହତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ ।

9. *Communitas* is modality of social relationship an "area of common living" that has *many* sacred attributes. "Communitas is an acute point of community. It takes community to the next level and allows the whole of the community to share a common experience, usually through a rite of passage. This brings everyone onto an equal level: even if you are higher in position, you have been lower and you know what that is" (Turner 1991, 132).

10. "Cultural profiling is often used to identify potential problems in relocation, but is also of value in identifying possible difficulties between members of multicultural teams. It helps an organization and individuals to assess their own cultural style and compare it with the culture to which they are moving" (Harun 2013, 260).

11. Ethnicity is often seen as the focus of identity …on the basis of so-called objective criteria, that is, biological, geographical, linguistic, cultural, or religious characteristics. However, cultures change, but the continuation of group boundaries themselves may be more long-standing (Liebkind 1999, 140).

12. …collectivities – the kinds of institutions that form 'a bounded area of social order reproduced and recreated by actors who have a sense of membership of that social order' (Malešević and Haugaard, 2002: 2)

## ସହାୟକ ଗ୍ରନ୍ଥସୂଚୀ


1. ପାଢୀ, ରାଜେନ୍ଦ୍ର । *କୋରାପୁଟର ଆଦିବାସୀ ଲୋକ ସଂସ୍କୃତି* । ବାଲେଶ୍ୱର: ସୁବର୍ଣ୍ଣଶ୍ରୀ ପ୍ରକାଶନୀ, ୨୦୧୬ ।
2. ପାଢୀ, ରାଜେନ୍ଦ୍ର, ଓ ବିଜୟ ଉପାଧ୍ୟାୟ ।*ଦେଶିଆ ଜ୍ଞାନକୋଷ* । ଭୁବନେଶ୍ୱର: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ୨୦୧୦ ।
3. ବାଗ, ଗୋପୀନାଥ । *ଡମ ଲୋକ ସଂସ୍କୃତି* । ପର୍ଲା: ପ୍ରେମାଧର ସେଠିଆ, ୨୦୦୯ ।
4. ବାଗ, ସଞ୍ଜୀୟ କୁମାର । "ଡମ୍ ଗୋଷ୍ଠୀର ମୃତକର୍ମ: ଏକ ଆଲୋଚନା" । *ନବନୀତା* ଅକ୍ଟୋବର-ଡିସେମ୍ବର (୨୦୧୮): ୮୨-୮୮ ।
5. ବାଗ, ସଞ୍ଜୀୟ କୁମାର । *ଲୋକଧାରା: ପାରମ୍ପରିକ ସର୍ଜନଶୀଳ ଜୀବନଧାରାର ଅଧ୍ୟୟନ* । ଭୁବନେଶ୍ୱର: ଏଥେନା ବୁକ୍ସ, ୨୦୧୨ ।
6. ବିଶୀ, ଦୋଳଗୋବିନ୍ଦ । "ପ୍ରସଙ୍ଗ: ଲୋକ ଅନୁଷ୍ଠାନ" । *କଳାହାଣ୍ଡି : ଲୋକ ଅନୁଷ୍ଠାନ* । ସମ୍ପାଦନା । ଜୟନ୍ତ କୁମାର ବେହେରା, ଦୋଳଗୋବିନ୍ଦ ବିଶୀ, ଓ ପରମେଶ୍ୱର ମୁଣ୍ଡ । ଭାବାନୀପାଟଣା: ମହାବୀର ସାଂସ୍କୃତିକ ଅନୁଷ୍ଠାନ, ୧୯୯୮ । କ-ପ ।
7. ବେଶ୍ରା, ଦମୟନ୍ତୀ । *ସମାଜ ସଂସ୍କୃତି ପୃଷ୍ଠପଟରେ ମୟୂରଭଞ୍ଜର ସାନ୍ତାଳ* । ଭୁବନେଶ୍ୱର: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ୨୦୧୦ ।
8. ମହାପାତ୍ର, ନଗେନ୍ଦ୍ରନାଥ । *ଲୋଧା ସଂସ୍କୃତି ଓ ଲୋକ ସାହିତ୍ୟ* । ଭୁବନେଶ୍ୱର: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ୨୦୦୨ ।
9. ମିଶ୍ର, ମହେନ୍ଦ୍ର କୁମାର । *କଳାହାଣ୍ଡିର ଲୋକ ସଂସ୍କୃତି* । କଟକ: ଫ୍ରେଣ୍ଡସ ପବ୍ଲିଶର୍ସ, ୧୯୯୬ ।
10. ସାହୁ, ଚମ୍ପକ । *ଆମ ଜୁଆଙ୍ଗ ଲୋକ ସାହିତ୍ୟ* । ଭୁବନେଶ୍ୱର: ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ୨୦୧୪ ।
11. ସୁନାନୀ, ବାସୁଦେବ । *ଦଳିତ ସଂସ୍କୃତିର ଇତିହାସ* । ନୂଆପଡା: ଈଶାନ-ଅଙ୍କିତ ପ୍ରକାଶନୀ, ୨୦୦୯ ।
12. Blackshaw, Tony. *Key Concepts in Community Studies*. London: Sage, 2010.
13. Fishmnan, Joshua A. Ed. *Handbook of Language and Ethnic Identity*. New York: Oxford University Press, 1999.
14. Guzy, Lidia. "Ritual Village Music and Marginalised Musicians of Western Orissa". *International Journal of Asia Pacific Studies* 9.1 (2013): 121-140.
15. Hurn, Brian J., Barry Tomalin. "Cultural Profiling and Classification". *Cross-Cultural Communication: Theory and Practice*. London: Palgrave Macmillan, 2013. 259-273.
16. Jansen, William Hugh. "The Esoteric-Exoteric Factor in Folklore". *Fabula* 2.2: 1959. 205-211.
17. Liebkind, Kartmela. "Social Psychology". *Handbook of Language and Ethnic Identity*. Ed. Joshua A. Fishmnan. New York: Oxford University Press, 1999.140-151.
18. Malešević, Siniša, and Mark Haugaard. 'Introduction: the Idea of Collectivity', *Making Sense of Collectivity: Ethnicity, Nationalism and Globalisation*. Eds. Siniša Malešević and Mark Haugaard. London: Pluto Press, 2002. 1-11.
19. Ministry of Tribal Affairs. "State wise List of Scheduled Tribes in India." Web. Accessed on 12 November 2018. <https://tribal.nic.in/ST/LatestListofScheduledtribes.pdf>.
20. Turner, Victor. 1969. *The Ritual Process: Structure and Anti-Structure*. New York: Cornell University Press, 1991.